# KABITAKALAP.

## PART I.

BY

GOBINDA RATH,

THIRD EDITION.



# କବିତାକଳାପ ।

ପ୍ରଥମ ଭାଗ

ଶ୍ରୀ ଗୋବିନ୍ଦରଥଙ୍କ ବିରଚିତ



CUTTACK,

Printed by the Cuttack Printing Company.

1885.

ମୂଲ୍ୟ_ଦୁଇଅଣା

# କବିତାକଲାପ ।

## ପୂର୍ଣ୍ଣିମାର ଜଣାଜାଳ ।

୧

ଅହା କି ସୁଚାରୁ	ଗଗନ ସୁଚାରୁ
ଚାରୁ ତାରାବଳୀ	ଦୀପରୂପେ ଜ୍ୱଳ
ଅପୂର୍ବ ସୁନ୍ଦର ପ୍ରକୃତିଗୃହେ ।
ନିସ୍ତବ୍ଧ ସକଳ	ନାହିଁ କୋଳାହଳ
ସରିତର ଜଳ	ନୁହେ କଳ କଳ
ସୁନିର୍ମଳ ବଧୂମଣ୍ଡଳ ଗୃହେ ।

୨

ଦେଖି ଚନ୍ଦ୍ରରୂପ	ଭାବେ ନାନା ରୂପ
ପ୍ରକୃତି ମସ୍ତକେ	କେ ଦେଲା ଛତ୍ରକେ
ଏ ଚନ୍ଦନଖୋପା ଅତି ଯତନେ ।
କିବା ରୌପ୍ୟ ଥାଳୀ	ଧରୁ ନନ୍ଦିବାଳୀ
ଭକ୍ତିସହକାରେ	ଆନନ୍ଦଭାବରେ
ଉପହାରେ ପୂଜେ ଜଗଜ୍ଜୀବନେ ।

୩

ମନ୍ଦସମୀରଣ	ବହେ କ୍ଷଣ କ୍ଷଣ
ତନୁ ପ୍ରେମାଶ୍ରିତ	ପଲ୍ଲବ ଦୋଳିତ
ଘୁରୁ ଘୁରୁ ଶବ୍ଦ ତରୁଗହ୍ୱରେ ।
ଦେଖି ପତ୍ରମାନ	କରେ ଅନୁମାନ
ରଜନୀ କାମିନୀ	ଭାବୁକ ମୋହିନୀ
କ୍ଷଣିକ ନିଶ୍ୱାସ ଛାଡ଼ୁଚି କରେ ।

୪

ନିଶାର ତୁଷାର      ଅତି ଅନ୍ଧକାର
ହୋଇ ଝପ ଝପ      ପଡ଼େ ଥପ ଥପ
ଅତିସିକ୍ତ କରେ ମେଦିନୀ ଦେହେ ।
ନକ୍ଷତ୍ର ମଣ୍ଡିତା      ଚନ୍ଦ୍ରେ ଅଳଙ୍କୃତା
ପବନ ସେବିତା      ତହୁଁ ପୁଲକିତା
ରଜନୀ ଆନନ୍ଦ ଅଶ୍ରୁଙ୍କି ବହେ ।

୫

ଭରେ ଅବନତ      ଅଟଇ ସତତ
ସୂର୍ଯ୍ୟରେ ତାପିତ      ତେଣୁ କ୍ଳେଶାନ୍ୱିତ
ମେଦିନୀମଣ୍ଡଳ, ଏ ଭାବ ଜାଣି ।
ସତେ ନିଶାକର      ହୋଇ ଦୟାପର
ତାର କ୍ଳେଶରାଶି      ଦେବାକୁ କି ନାଶି
ସୁଶୀତଳ ଜଳ ସିଞ୍ଚଇ ଆଣି ।

୬

ଯେତେ ଗ୍ରହିଚର      ଗଗନେ ବିହାର
କରି ନାନାରୂପେ      ପ୍ରହରୀ ସ୍ୱରୂପେ
ଦେଖନ୍ତୁ ପ୍ରକୃତି ଶୋଭା ନୟନେ ।
ସୁନୀଳ ସାଗର      ପାଇ ଚନ୍ଦ୍ରକର
ଅହ୍ଲାଦେ ଫୁଲଇ      ତେଜେ ଗରଜଇ
ସୁବର୍ଣ୍ଣ ସୁନ୍ଦର ରୂପ ଦର୍ଶନେ ।

୭

ଭାବଇ ଭାବୁକ      ହୋଇ ଜାଗରୂକ
ଏ କି ଚମତ୍କାର      ନୀଳପାରାବାର
ସୁବର୍ଣ୍ଣସ୍ୱରୂପ ରୂପେ ବିରାଜେ ।

ନହେ ବା ସାଗର   ସୁବର୍ଣ୍ଣ ଅମ୍ବର
ଭରିଲଛ ଦୋଇ   ଏପରି ଫ୍ୟାଇ
ମେଦିନୀ ଗର୍ଭର ତାପର କାର୍ଯ୍ୟ ।

୮

ଉନ୍ନତ ସୁନ୍ଦର   ପୋତାଦି ନିକର
ସାଗର ବକ୍ଷରେ   ଗମ୍ଭୀର ସ୍ୱରରେ
ମନ୍ଥି ଜଳଶ୍ରେଣି କରେ ଗମନ ।
ଭାବଇ ଭାବୁକ   ହୋଇଣ ଉତ୍ସୁକ
ଭୂତଳ ଗଗନେ   ସୁମଧୁର ସ୍ୱନେ
ପକ୍ଷୀଚୟ କି ଏ ଉଡ୍ଡୀୟମାନ ।

୯

ଉନ୍ନତ ପର୍ବତ   ତରୁଲତାବୃତ
ତହିଁରୁ ନିର୍ଝର   ବହେ ଝର ଝର
ମର ମର ଶବ୍ଦେ ପୂର୍ଣ୍ଣ ସେ ସ୍ଥଳ ।
କୁସୁମକାନନେ   ସେହି ରମ୍ୟସ୍ଥାନେ
ଈଶ୍ୱର ଭଜନେ   ଋଷିଙ୍କର ମନେ
ଅନନ୍ଦରସ୍ରୋତ ହୁଏ ପ୍ରବଳ ।

୧୦

ବିସ୍ତୀର୍ଣ୍ଣ କାନନ   ତୁଙ୍ଗ ନିକେତନ
ନଗର ପ୍ରଦେଶ   ଅନନ୍ତ ଆକାଶ ;
ସକଳେ ନିବେଶ ଯୋଗ ସାଧନେ ।
ପ୍ରଭୁଙ୍କ କ୍ଷମତା   କରୁଛନ୍ତି ଚିନ୍ତା
ଗମ୍ଭୀର ଭାବରେ   ଉଚ୍ଚ ଉଦ୍ଦେଶ୍ୟରେ
ଭାବୁକ ବର୍ଗରେ ଏ କଥା ମନେ ।

---

## ପଞ୍ଜୁରବଦ୍ଧ ଶୁକପକ୍ଷୀ ପ୍ରତି ।

୧

କି ହୃଦିଶା ଏବେ ଭୋର ପକ୍ଷୀରତ୍ନ,
ଲବୂନ୍ଥୁ ଜୀବନେ ଅଉ କିସ କାର୍ଯ୍ୟ;
ଟେପଚକ ବାୟୁସେ    ସ୍ୱାଧୀନଭାବଗେ
ମନର ହରଷେ    ସବୁ କାରବେଗେ
ଉଠିଣ ଆକାଶେ କାନ୍ତ୍ର ଦନ ।
ରୁଦ୍ଧ ପଞ୍ଜୁରରେ ପଡଅଛୁ !!! ଶୁକ,
ହୋଇଅଛୁ ଭୋର ଗୁରୁତର ଶୋକ,
ଭୋର ସୁଖ ରବ    ଭୋର ମୁଖ ଛବ
ମଳନତା ଲଭ    ଗଲା ସବୁ ଲଭ
ଦୁଃଖଗ୍ରସ୍ତ ଜଣ ଅଛୁ ଅଶନ ।

୨

ସରସୀ ଜୀବନ ପ୍ରଗର ଭେଜରେ,
ହୃନାଶ ଲଭିଲେ; ସବୁ ଜଳଚରେ,
ପଦ୍ମ କଇଁକୁଳ    ସଙ୍କଲେ ବ୍ୟାକୁଳ
ହୋଇ ଭୂମିଇଲ    ପଡ଼ନ୍ତ୍ର ଚଞ୍ଚଳ
ହୁଏ ତାଙ୍କ କଲ ସବୁ ଅନ୍ତର ।
ସେହ୍ନ ପଲ୍ଲ ପକ୍ଷି ଭୋ    ମାନସ ସର,
ଦୁଃଖାନଳେ ଅଛୁ ଅତ ଶୀର୍ଣ୍ଣଭର,
ଭୋର ମନୋବୃତ୍ତି    ଦୟା, ସ୍ନେହ, ପ୍ରୀର୍ତି
ଉତ୍ସାହ, ଉନ୍ନତ,    ଆଶା କଲ୍ପନା
ସକଳ ହୃନାଶ ନୁହେ ଗୋଚର ।

## ସ୍ୱଦଶାବିଳାପ ।

୩

କି ଭାବନା ପକ୍ଷି କରୁଅଛୁ ମନେ,
ନନ୍ଦନର ଚନ୍ଦ୍ର ଦେଖୁଁ ତୋ ନୟନେ,
ତଟିନୀ ପୁଳିନେ     ନିବିଡ଼ କାନନେ
ସ୍ୱାଧୀନତା ଜ୍ଞାନେ     ଭ୍ରମି ସ୍ଥାନେ ସ୍ଥାନେ
କଥାଇ ସମସ୍ତ ରହନ୍ତି ସୁଖେ ? ।
ତୋର ଖାଦ୍ୟ ସବୁ ନାନା ଜାତ ଫଳ,
ସୁସ୍ୱାଦୁ କଦଳୀ ସୁପକ୍ୱ ରସାଳ,
ଯାହାଙ୍କୁ ସ୍ପର୍ଶିନ     କଲେ କଉ ଜନ
ତୁଚ୍ଛ ପକ୍ଷୀଗଣ     କରନ୍ତି ଭୋଜନ
ତୁହି ପଞ୍ଜୁରରେ ପଡ଼ଛୁ ଦୁଃଖେ ।

୪

ଦୁରନ୍ତ କଠୋର ଶମନର ସମ,
କୁରୂପ କୁତ୍ସିତ ନିର୍ଦ୍ଦୟ ନିର୍ମମ,
କାକ ପେଚ୍ଚ ଦଳ     ଉଚ୍ଚ ବୃକ୍ଷ ଡାଳ
ହୋଇଣ ସବଳ     କରୁ ମହା ଗୋଳ
ସ୍ୱାର୍ଥବେଗେ ଉଡ଼ୁଛନ୍ତି ଗଗନେ ।
ମୁହୂର୍ତ୍ତିକ କ୍ଷଣେ ରେ ପକ୍ଷିବୃଜନ,
ଦେଖନ୍ତେ ଜଗତେ ସର୍ବ ଜୀବଗଣ,
ଥିଲେ ତୋର ବଳ     ଦେଖାନ୍ତୁ କୌଶଳ
ଆକାଶ ପାତାଳ     ମର୍ତ୍ତ୍ୟ ଭୂମି ସ୍ଥଳ
କର୍ଷାଇ, ଦେଅନ୍ତି ଔଷଧ ପାନେ ।

୫

କିନ୍ତୁ ପକ୍ଷି ମୋର ଥିଲେ ବଳ, ବୀର୍ଯ୍ୟ,

ନମ୍ରମ କରୁଛୁ କରନ୍ତୁ ସାହାଯ୍ୟ,
ମୋ ପ୍ରାଣପଣରେ ଦୃଢ଼ ପ୍ରତିଜ୍ଞାରେ
ରହୁ ଉଦ୍ଯୋଗରେ କଠୋର କାର୍ଯ୍ୟରେ
ସ୍ୱାଧୀନ କରନ୍ତୁ ମୋ କଳେବର ।
ଯହିଁ ପକ୍ଷି ମୋର ଲୋଚନେ ଲୋଭନ,
ମୋର ଘରେ ସଦା ରହେ ସେ ପୁଲକ,
ଯାହା ହେବ ହେବ ତାହା ଦେଖାଯିବ
ଭାଗ୍ୟରେ ଯେ ଥିବ ଅବଶ୍ୟ ଘଟିବ
ଭାବନାରେ କିଛି ନାହିଁ କାତର ।

୬

ଅରଣ୍ୟସଞ୍ଚାରୀ ମହାଗଜ କେବେ,
ପଶୁରାଜ ସିଂହ ପୁଣି ପଞ୍ଜରବେ,
ଶୃଙ୍ଖଳେ ବନ୍ଧନ ହୁଅନ୍ତୁ ଅଧୀନ
ତୁଚ୍ଛ କ୍ଷୁଦ୍ରଜୀବ କେତେ କାଳ ଥିବ
ଘୋର ଅଧୀନତା କି ଚମତ୍କାର ।
ତେବେ କିନ୍ତୁ ପକ୍ଷି ଏ କଥା କହିବା,
ସେହି ପାପୀଜନେ ଘୋର ଦଣ୍ଡ ଦେବା,
ଯେଉଁ ପାପୀଜନ ମହା ମୂଲ୍ୟବାନ
ସ୍ୱାଧୀନତାଧନ ତୋହର ହରଣ
କଲା, ପ୍ରତିଫଳ ପାଉ ତାହାର ।

୭

ସବୁ ସମୟତ ସମାନ ନ ଯାଏ,
ସଦା କାହା ଦର୍ପ ଜାଗ୍ରତ ନ ଥାଏ,
ପର୍ବତ, ସାଗର ସିନ୍ଧୁ, ମହୀଧର

ଦୁର୍ବଳ, ସବଳ ସବଳ, ନିର୍ବଳ
ହେଉଛ ଦେଖୁଛୁ ତୁ ନୟନରେ ।
ଆଉ ପକ୍ଷୀବର ନ କର ତୁ ଚିନ୍ତା,
ଚିନ୍ତା ଯୋଗେ ଦେହ ଲଭିବ କୃଶତା,
ଅଖିଳର ପାତା ସର୍ବଙ୍କବିଧାତା
କେ ଜାଣି ବିଧାତା ତୋର ସ୍ୱାଧୀନତା
ପୁନରପି କାଳେ ଦେଇ ପାରେ ।

---

## ପ୍ରକୃତିର ଶୋଭା ।

୧

ପ୍ରକୃତିର ଶୋଭା କି ଚମତ୍କାର,
ଦେଖିଲେ ଆନନ୍ଦ ହୁଏ ଅପାର,
ପ୍ରକାଣ୍ଡ ଗଗନ କର ବିଲୋକନ
ଅସୀମ ଅନନ୍ତ ଅଟେ ଅମ୍ବର,
ନୀଳ, ପୀତ ବର୍ଣ୍ଣେ ତା କଳେବର,
ଧନ୍ୟ ଚିତ୍ରି ଅଛି ଯେ ଚିତ୍ରକର ।

୨

ବିପୁଳ ଗଗନେ ସ୍ୱଚ୍ଛନ୍ଦ ଭାବେ,
ଶ୍ରେଣୀବଦ୍ଧ ହୋଇ ସୁସ୍ୱର-ରାବେ,
ପକ୍ଷରେ ଆଘାତ କରି କରି ବାତ
ଯାନ୍ତି ପ୍ରତିଘାତ ବଳପ୍ରଭାବେ,
ପକ୍ଷୀଗଣ କଉତୁକେ ସ୍ୱଭାବେ,
କି ଆଶ୍ଚର୍ଯ୍ୟ ଶୋଭା ମୁଁ ମନେ ଭାବେ ।

୩

ସତେ ପକ୍ଷୀ ସୈନ୍ୟ ଏକତ୍ର ହୋଇ,
ସୁସଜ୍ଜିତ କାହିଁ ସମର ପାଇଁ,
ଗଗନ ମାର୍ଗରେ ତାହାଙ୍କ ଗତ୍ୟରେ
ଅନ୍ଧକାର କରଅଛନ୍ତି କି କେହି
ତାଙ୍କୁ ପରାଭବ ଦେବାକୁ ତହିଁ,
ବୀରବେଶେ ଯାନ୍ତି ଚଞ୍ଚଳ ହୋଇ ।

୪

ବାଳଭାନୁ ରୂପ ବଡ଼ ସୁନ୍ଦର,
ଦେଖି ପ୍ରଫୁଲ୍ଲିତ ପଦ୍ମାକର,
ହେମ ଛତ ବର୍ଣ୍ଣ କଲେ ବିଲୋକନ
ଉଲ୍ଲାସିତ ନୁହେ କାହା ଅନ୍ତର,
ଅନୁପମ ଶୋଭା କି ପଟାନ୍ତର,
ଉଚ୍ଛୁଳେ ଭାବୁକ ଭାବ ସାଗର ।

୫

କ୍ରମେ କ୍ରମେ ଉଠି ଦିବସମଣି,
ପ୍ରଖର ତେଜରେ ଅଗ୍ନି କି ଜିଣି,
ଘୋର ଅନ୍ଧକାର କରନ୍ତି ସଂହାର
ବିଚରଣ ଲୋକେ ଭୂଲୋକପୁଣି,
ଧୃଷ୍ଟସିନ୍ଧ୍ୟ ହୁଏ ମୁଁ ମନରେ ଗୁଣି,
ତାହା ସୂକ୍ଷ୍ମ ଏଣୁ କେ ସେହୁ ପ୍ରାଣୀ ।

୬

ରଜନୀ ନାୟକ ଉଦୟ ହୋଇ,
କେମନ୍ତ ଅପୂର୍ବ ଶୋଭା ଦିଶଇ

କୁମୁଦିନୀମାନେ ସରସୀ ଜୀବନେ
ଆନନ୍ଦେ ହସନ୍ତି ମୁଖଫିଟାଇ,
ଶୀତଳ କିରଣ ଯୋଗରେ ମଣ୍ଡି,
କି ଅମୂଲ୍ୟ ସୁଖ ଭୋଗ କରଇ ।

୭

ଉଲ୍ଲାସେ ଫୁଲଇ ପୁଣି ସାଗର,
ନୀଳବର୍ଣ୍ଣରୂପ ଖଉ ଜଳର,
ତାର ବର୍ଣ୍ଣ, ହୀନ କରଇ କାଞ୍ଚନ
କେବଳ କାରଣ ସେ ନିଶାକର,
ସେକାଳେ ଦର୍ଶନ କଲେ ସାଗର,
କି ମୋହିତ ନହେ କାହା ଅନ୍ତର ।

୮

ବିପୁଳା ପୃଥିବୀ କର ଲୋକନ,
ଶୋଭାର ଭଣ୍ଡାର ଅଟେ ଏସ୍ଥାନ,
ନୟନଦର୍ପଣଇ ଯେଣେ ଦେବ ଚର୍ଚ୍ଚି,
ତେଣେ ଲଗ୍ନ ହେବ ତୁମ୍ଭ ଲୋଚନ,
ଲୌହକୁ ଚୁମ୍ବକ ଟାଣେ ଯେସନ,
ଶୋଭା ଆକର୍ଷଇ ନେତ୍ର ତେସନ ।

୯

ପୃଥ୍ୱୀଶିରସ୍ଥ ଉନ୍ନତ ଗିରି,
ତରୁ, ଲତା, ଗୁଳ୍ମ ଯା ଶିରଶିରୀ,
ତା ନିର୍ଝର ଜଳ କଲେକ ଲୋକନ,
ଉଦର ଆନନ୍ଦେ ଯାଉଛି ପୂରି,
ଭାବୁକ ମନରେ ଏ ଭାବ ଧରି,
ଭାବଇ ଏ ସବୁ କାହା ଚାତୁରୀ ।

୧୦

ଅରଣ୍ୟ ମଧ୍ୟକୁ ଯେ ଯାଉ ଅଛ,
ସେହି ତାର ଶୋଭା କେବେ ଦେଖୁଛ,
ପଶୁ ପକ୍ଷିମାନେ ବିହରନ୍ତି ବନେ,
ମର ମର ଶବ୍ଦେ ପତ୍ର ଝଡୁଛି,
ଦେଖିଲେ ଭାବୁକ ମୋହି ହେଉଛି,
ଧନ୍ୟ ସେହି କର୍ତ୍ତା ଯେ ତା କରଛି ।

୧୧

ପର୍ବତ-ନନ୍ଦନୀ ରମ୍ୟ ତଟିନୀ,
ପନ୍ଥ ଦରଶନେ ଅନୁଧାବନୀ,
କଳ କଳ ଧ୍ୱନି କରେ ସଦା ପୁଣି
ଆନନ୍ଦିତ ତାହା ସକଳେ ଶୁଣି,
ତାର ତୀରବର୍ତ୍ତୀ ବୃକ୍ଷ ଶ୍ରେଣୀ,
ତୋଷନ୍ତି ଦର୍ଶକ ନୟନ ବେନି ।

୧୨

ସୁରମ୍ୟ ଉଦ୍ୟାନ ମଧ୍ୟରେ ସର,
ହୋଇଛି ଯାହାର ନେତ୍ର ଗୋଚର,
ତାହାର ସେ ଶୋଭା କେତେ ମନୋଲୋଭା
ଭାବୁଥିବ ସେହି ହୃଦ ମଧ୍ୟର,
କୁମୁଦ କୁସୁମ ପଦ୍ମନିକର,
ପ୍ରସ୍ଫୁଟିତ ହେଲେ କି ଶୋଭାକର ।

୧୩

ସରସୀ ତୀରସ୍ଥ ତରୁଶ୍ରେଣୀର,
ଛାୟା ଜଳେ ପଡ଼ି କେଡ଼େ ସୁନ୍ଦର

ଗଗନ ମଣ୍ଡଳେ ତରୁ ଯେବେ ଦୋଳେ
ଗ୍ରହ ତାର ଜଳେ ସେହି ପ୍ରକାର,
ସରସୀ ଦର୍ପଣେ ମୁଖ ନିଜର,
ଦେଖୁଅଛନ୍ତି କି ସେ ତରୁବର ।

୧୪

ଆକାଶେ ହୋଇଲେ ଚନ୍ଦ୍ର ଉଦିତ,
ଜଳେ ତାର ରୂପ ପ୍ରତିବିମ୍ବିତ,
କଉତୁକରେ ଭାବଇ ମନରେ
ଦେଖି ଦେଖି ଅହା କି ଅଚମ୍ବିତ,
ଊର୍ଦ୍ଧ୍ୱ ଭାଗେ ଚନ୍ଦ୍ର ଅଛି ଶୋଭିତ,
ଜଳେ ଏକ ଚନ୍ଦ୍ର କାହିଁ ସ୍ଥାପିତ ।

୧୫

ତୃଣାବୃତ କ୍ଷେତ୍ର ପ୍ରଭାତକାଳେ,
ମଣ୍ଡିତ ହୋଇଣ ତୁଷାରଜାଳେ,
ମୁକୁତା ନିଚୟ ଶୋଭାକୁ ବିଳୟ
କରଇ ଚିନ୍ତିଲେ, ମନ ବିହ୍ୱଳେ,
ହେବ କି ଏ ଶୋଭା ମନୁଷ୍ୟ ବଳେ,
ଧନ୍ୟ ଧନ୍ୟ ପ୍ରଭୁ କଳ କୌଶଳେ ।

---

## ଆଶା ।

୧

ଧନ୍ୟ ଧନ୍ୟ ଆଶା ମହିମା ତୋର,
ଜୀବ ଜଗତରେ ବିଶ୍ୱାସ ସ୍ଥିର,
ତୁ ନ ଥିଲେ ଜୀବ ମରଣ ଲଭିବ

ଏଥିରେ ସନ୍ଦେହ ଅଛି କାହାର,
ସବୁସ୍ଥଳେ ଅଛି ତୋ ଅଧିକାର,
ତୋହ ସୀମା ହେବ କାହା ଗୋଚର ।

୨

ଶୁଷ୍କଚର୍ମବୃତ ପକ୍ୱ କୁନ୍ତଳ,
ଲୋଟଇ ଯେ ନର ଏ ଧରାତଳ,
ଦେହେ ନାହିଁ ବଳ      ହୁଏ ଟଳ ଟଳ
ହସ୍ତ ପଦ, ଅବୟବ ଅଚଳ,
କିନ୍ତୁ ମାୟାମୋହ ତାର ପ୍ରବଳ,
ଅଶା ଦେଖାଉଛି କେତେ କୌଶଳ

୩

ପତି ପରାୟଣା ସତୀ ନାରୀର,
ହୃଦୟବଲ୍ଲଭ ହେଲେ ଅନ୍ତର,
କ୍ଳେଶିତ ଜୀବନ      ହୁଏ ତନୁ କ୍ଷୀଣ
ଦୁଃଖମୟ ବୋଧ ହୁଏ ସଂସାର,
କିନ୍ତୁ ଅଶା ବଳବତୀ ତାହାର,
ମାୟାମୋହେ ପଡ଼ି କରଇ ଘର ।

୪

ଜୀବନ ସମାନ ଶିଶୁ ସନ୍ତାନ,
କାଳକବଳରେ ହେଲେ ପତନ,
ପିତା ମାତାଙ୍କର      ଛିଣ୍ଡେ ମାୟାଡୋର
ସଂସାର ଅନିତ୍ୟ ହୁଅଇ ଜ୍ଞାନ,
କିଛିକ୍ଷଣ ପୁଣି ହେଲେ କ୍ଷେପଣ,
ଅଶା ମାୟାମୋହେ କରେ ବନ୍ଧନ ।

୫

ଜନକ ଜନନୀ ନିଜ ନନ୍ଦନ,
କରୁଛନ୍ତି ସଦା କଷ୍ଟେ ପାଳନ,
ରୋଗେ ବ୍ୟାକୁଳିତ    ହେଲେ ତାଙ୍କ ସୁତ
ହୃଦୟ ଫାଟଇ ଶୁଖେ ବଦନ,
ଝୁରନ୍ତେ କରନ୍ତି ମହାରୋଦନ,
ରଖନ୍ତି ଔଷଧ ଦେଇ ଜୀବନ ।

୬

ଘୃଶା ଅଛି ଯେବେ ବୃଦ୍ଧକାଳରେ,
ଅବଶ ହୋଇବେ ନିଜ ବଳରେ,
ସେ କାଳରେ ପୁଣି    ପୁତ୍ର କୁଳମଣି
ପାଳିବ ତାହାଙ୍କୁ ନିଜ ବଳରେ,
ଧନ ହରଇବେ ସୁକୌଶଳରେ,
କୀର୍ତ୍ତି ରଖିଯିବେ ମହୀତଳରେ ।

୭

ଅରଣ୍ୟନିବାସୀ ତପସ୍ୱୀଗଣ,
ବନ ଫଳ ମୂଳ କରି ଭକ୍ଷଣ,
ଘୋରଶୀତକାଳେ    ନିଦାଘ ଅନଳେ
ବରଷା ଦିନରେ କଷ୍ଟ ଲଭିଣ,
କରୁଛନ୍ତି ସଦା ଯୋଗସାଧନ,
ଘୃଶା ଅଛି ସ୍ୱର୍ଗେ ପାଇବେ ସ୍ଥାନ ।

୮

କୃଷିଜୀବୀ କ୍ଷେତ୍ର କରି କର୍ଷଣ,
ବହୁ ଯତ୍ନେ କରେ ବୀଜରୋପଣ,

କ୍ଷେତ ଭଲ ହେଲେ   ଶସ୍ୟ ଲାଭ କଲେ
କୁଟୁମ୍ବ କରିବ ପ୍ରତିପାଳନ,
ସୁଖରେ କାଟିବ ସକଳ ଦିନ,
ସଦା ଏହି ତୃଷ୍ଣା ହୃଦେ ସ୍ଫୁରଣ ।

୯

ସୁକୁମାରମତି ବାଳକଗଣ ,
କରୁଛନ୍ତି ସଦା ବିଦ୍ୟାପଠନ,
ତୃଷ୍ଣା ବଳବତୀ   ହେଲେ ଜ୍ଞାନୋନ୍ନତି,
ଲଭିବେ ସୁଖ୍ୟାତି ପଦ ସମ୍ମାନ,
ବଢ଼ିବ ଗୌରବ ଦିନକୁ ଦିନ,
ଶୁକ୍ଳପକ୍ଷେ ଯେହ୍ନେ ବିଧୁବର୍ଦ୍ଧନ ।

୧୦

ତୃଷ୍ଣାବଦ୍ଧ ହୋଇ କେତେ ବଣିକ,
ଲଙ୍ଘି ମହା ମହା ପ୍ରତିବନ୍ଧକ,
ଅଗ୍ନି କ୍ଷେତ୍ରାବୃତ   ତୁଷାର ମଣ୍ଡିତ
ଋଷିଆ, ଇଙ୍ଗ୍‌ଲଣ୍ଡ, ଚୀନ, ତୁରଷ୍କ,
ବୁଲୁଛନ୍ତି ସଦା ଅବନୀଯାକ,
ତୃଷ୍ଣା ଅଛି ଯନେ ବଢ଼ିବ ଟେକ ।

୧୧

ଦାସତ୍ୱ କରିବା ଯାହାର ମନ,
ସ୍ୱାମିଙ୍କ କହେ ସେ ମିଷ୍ଟବଚନ,
ସ୍ୱାମୀ ଅବା କେବେ   ପ୍ରସନ୍ନ ହୋଇବେ
କରିବେ ବା ଉଚ୍ଚପଦପ୍ରଦାନ,

ଆଶାବଦ୍ଧ ହୋଇ ସେ ମୂର୍ଖଜନ,
ପ୍ରାଣପଣେ କରେ ଅନୁସରଣ ।

୧୨

ସତ୍ୟ ଆଲୋଚକ ଗୁଣୀଜନର,
ଭୋଜନ ଶୟନେ ନାହିଁ ଆଦର,
ଅଶା ବଳବତୀ          ଲଭିବେ ସୁଖ୍ୟାତି
ହୋଇଲେ ଜଗତେ ସତ୍ୟ ପ୍ରଚାର,
ରଜନୀ ଦିବସେ ଚିନ୍ତାଅପାର,
ଖୋଜନ୍ତି କାରଣ ପ୍ରତିକାର୍ଯ୍ୟର ।

୧୩

ଆଶାଯୋଗେ ପର୍ତ୍ତୁଗିଜଗଣଜନ,
ଭାରତବର୍ଷକୁ ପଥଦର୍ଶନ—
କରି ଆନନ୍ଦିତ          ହେଲେ ପୁଲକିତ
ଭାରତେ କରିବେ ଧନଅର୍ଜନ,
ଅଫ୍ରିକା ଦକ୍ଷିଣଭାଗର ସ୍ଥାନ,
କଲେ "ଉତ୍ତମାଶା" ନାମ ପ୍ରଦାନ ।

୧୪

ଆଶାଯୋଗେ "କଲମ୍ବସ" ନାବିକ ।
ଚଳାଇଲେ ପୋତ ସାଗରଯାକ,
ଦେଖି ଅମେରିକା          ଉଡ଼ାଇ ପତାକା
ଫେରିଲେ ଏ ଦେଶେ ସେ ସାହସିକ ,
ଆମେରିକା ଦେଶ ଜାଣିଲେ ଲୋକ,
ପଛେ ପୁଣି ଗଲେ କେତେ ବଣିକ ।

୧୫

ପ୍ରବଳପ୍ରତାପୀ ରଣନିପୁଣ,
ବୀର ସିକନ୍ଦର ରିପୁଦଳନ,
କରି ଘୋରଯୁଦ୍ଧ କେତେ ଜନପଦ
ଲଭିଲେ ବହୁତ ନପଆସନ,
ନୋହିଲା ତାଙ୍କର ଆଶା ପୂରଣ,
ସିନ୍ଧୁତୀରେ କଲେ ବସି ରୋଦନ ।

୧୬

ଆଶାବଦ୍ଧ ହୋଇ ଯବନଗଣ,
କଲେ ଭାରତରେ ପଦକ୍ଷେପଣ,
ଅମୂଲ୍ୟ ଭାରତ କରି କରଗତ
ପାଇଲେ ବହୁତ ମଣି କାଞ୍ଚନ,
ତଥାପି ନୋହିଲା ଆଶାପୂରଣ,
ଭାଙ୍ଗିଲେ ଅନେକ ଦେବଭବନ ।

୧୭

ଆଶାରେ ଉତ୍ସାହୀ କ୍ଲାଇବ ବୀର,
ପଲାଶୀ ପ୍ରାଙ୍ଗଣେ କଲେ ସମର,
କମ୍ପାଇଲେ ଦେଶ ଦେଖାଇଲେ ତ୍ରାସ
ସିରାଜ ସୈନ୍ୟଙ୍କୁ କଲେକ ଦୂର,
ବଙ୍ଗେ ଉଡ଼ାଇଲେ ଧ୍ୱଜା ନିଜର,
ରଖିଲେ ଗୌରବ ଇଂରାଜଙ୍କର ।

୧୮

ବାମା ଲକ୍ଷ୍ମୀବାଈ ଝାନସି ରାଣୀ,
ଅମୂଲ୍ୟ ସ୍ୱାଧୀନ ଭାବକୁ ଜାଣି,

ମନେ ମନେ ଗୁଣି    କହିଲା ତରୁଣୀ
ଅନ୍ୟ କିଏ ନେବ ମୋରାଜ୍ୟ ପୁଣି,
ଅଶାଯୋଗେ ଯୁଦ୍ଧ କଲା କାମିନୀ,
ତା ଯଶ ଘୋଷୁଛୁ ଏବେ ମେଦନୀ ।

---

## ସ୍ୱଦେଶ ।

ସ୍ୱଦେଶ କେମନ୍ତ    ଅଟେ ମନୋମତ
କେ କହିବ ତା ବିସ୍ତର ।
ସ୍ୱଦେଶର ଶୋଭା    କେଡ଼େ ମନୋଲୋଭା
ତା ପାଇଁ କେ ନୋହେ ଧାଉ ।
ଦେଶ ତରୁବର    ନଦୀ ସରୋବର
ସମସ୍ତେ ଯେ ମନୋହର ।
ଯେତେ ପଶୁପକ୍ଷୀ    ଦେଖିବ ନିରେଖି
ସକଳେ ଗୁଣ ଆକର ।
ସ୍ୱଦେଶର କୀର୍ତ୍ତି    ମନୋହର ମୂର୍ତ୍ତି
ଦେଖି ଚିତ୍ତ ଫୁଲଯାଏ ।
ସ୍ୱଦେଶୀୟ ରାଜା    ସ୍ୱଦେଶୀୟ ପ୍ରଜା
ଦେଖି ତୋଷ କେ ନ ପାଏ ।
ସ୍ୱଦେଶ ଚଳଣି    ଅତି ଭଲ ମଣି
ଚଳନ୍ତୁ ସମସ୍ତ ଜନେ ।
ସ୍ୱଦେଶୀୟ ପ୍ରଥା    କରନ୍ତୁ ଅନ୍ୟଥା
ଦୋଷ ବାଛୁ କିଛି ମନେ ।
ସ୍ୱଦେଶେ କି ସ୍ନେହ    ନ ଦେଖିଲେ ଲୁହ
ନୟନୁ ହୁଏ ବାହାର ।

ଛିନ ଛିନ ମନ ଅତି ଉଚ୍ଚାଟନ
ଯାତଣେ ଚୁମ୍ବକ ପ୍ରକାର ।
ଛିନ୍ନ ଘର ଦ୍ୱାର ପୁଣ ପରିବାର
ବିଦେଶେ ଯେସନ୍ତ ରହିବ ।
ସ୍ୱଦେଶୀୟ ମୁଖ ଦେଖି କେତେ ସୁଖ
ସେ ଅନୁଭବ କରିବ ।
ସ୍ୱଦେଶ ଉନ୍ନତି ପ୍ରଥମରେ ଚିନ୍ତ
ବିଦେଶ ଯେ ତାହା ପର ।
ଏହି ଜଗତରେ ବଡ଼ ହୁଅ ବାରେ
ବଙ୍ଗ, ଗଞ୍ଜା, ଧନେଶ୍ୱର ।
ଘେନ ହେ ଭ୍ରାତୃଗଣ ଶୁଣ ମୋ ବଚନ
ହୁଅ ବଦ୍ଧପରିକର ।
ପ୍ରତ୍ୟେକରେ ଯତ୍ନ କରିବା ସ୍ୱଦେଶ
ମୁଖକୁ ଉଜ୍ଜ୍ୱଳତର ।
ସ୍ୱଜାତି ଉନ୍ନତି ଚିନ୍ତ ଦିନ ରାତି
ସାଧନେ ହୁଅ ତତ୍ପର ।
ସ୍ୱଦେଶ ଗୌରବ କରି ଅନୁଭବ
ଜନମ ସାର୍ଥକ କର ।
ସ୍ୱଦେଶ ପ୍ରେମରେ ମୁଗ୍ଧ ହୋଇବାରେ
ଥିରେ କି ନ କରିଛନ୍ତି ।
ପଢ଼ି ଇତିହାସ ନ କର ସାହସ
ଦେଖି ଉତ୍କଳର ଗତି ।
ଓଡ଼ିଶା ମୋହର ମର୍ତ୍ତ୍ୟ ସ୍ୱର୍ଗପୁର
ନ ଗଣଇଁ ମୁହିଁ ଆନ ।

ଅତି ମନୋହର   ଜନପଦେଶର
ଥିଲେ ମଧ୍ୟ ବହୁସ୍ଥାନ ।
ସ୍ୱଦେଶୀୟ ଜନ   ବଦନ ଲୋକନ
କର ପ୍ରେମାମୃତ ପାନ ।
ସୁଖେ ହେବ ବଳ   ରହିବ ସ୍ୱାଧୀନ
ଏହି କାମନା ପ୍ରଧାନ ।
ଓଡ଼ିଶା ଭାବନା   ଉନ୍ନତି କାମନା
ହୁଏ ମୋର ନିରନ୍ତର ।
ଜଗତକାରଣ   ପତିତପାବନ
ଉତ୍କଳର ଦୁଃଖ ହର ।
ନାନା ଶସ୍ୟ ହେଉ   ସୁଖେ ଦିନ ଯାଉ
ରହନ୍ତୁ ମୋ ଭାଇଗଣେ ।
ନାନା ଗ୍ରନ୍ଥ ପଢ଼ି   ହୁଅନ୍ତୁ ସଜ୍ଞାତ
ଦେଖନ୍ତୁ ଜଗତଜନେ ।
ବହୁତ ବାଣିଜ୍ୟ   ହେଉ ଏହି ରାଜ୍ୟ
ଧନରେ ଅଳକା ସମ ।
ମହା ବୀର ଶୂର   ହୁଅନ୍ତୁ ବାହାର
ଯେହ୍ନେ ଭୀମ ପରାକ୍ରମ ।
ଡାକୁ ବୀରବାଙ୍କା   ଉଡ଼ୁଥାଉ ଧ୍ୱଜା
ଚିରକାଳ ଉତ୍କଳର ।
ସଂସାରେ ଆଦର୍ଶ   ହେଉ ଏହି ଦେଶ
ଅନ୍ୟ ଅନ୍ୟ ଜାତିଙ୍କର ।

---

## ଦ୍ୱୀପାନ୍ତରଗତ ବ୍ୟକ୍ତିର ଖେଦ ।

୧

ଅଉ କି ଅମୂଲ୍ୟ ଧନ ଦୁଃଖିର ରତନ
ସୁଧାଂଶୁବଦନି ଶିଶୁ ହେବ ବିଲୋକନ
କରିବ ମୁଁ ଆଲିଙ୍ଗନ   ସ୍ନେହେ ଦେବ ଚୁମ୍ବଦାନ
ତା କୋମଳ ଗଣ୍ଡସ୍ଥଳେ, ଏତ ସ୍ୱର୍ଗିସ୍ଥାନ
ଏ ଜୀବନେ ଘଟିବ କି ଛଟଗ୍ରଜୀବନ
ତାପିତ ପ୍ରାଣ ଶୀତଳ କରିବ ଏ ଦୀନ ।

୨

ଅହା ମୋ ପ୍ରେୟସୀ ବାଳା ଲୋଟି ଭୂମିତଳେ
ମୋ ହରଣେ ଦେଇଥିବ କରକୁ କପାଳେ
ନୟନୁ ଲୋତକଧାର   ବହୁଥିବ ବାରମ୍ବାର
ଡାକୁଥିବ "ଦୀନନାଥ" ! ଦୁଃଖ ଅସମ୍ଭାଳେ
ଲଭିଅ ଜୀବନଦୀପ ମୋହର ଚଞ୍ଚଳେ
ଦୁଃଖିନୀ କ୍ଳେଶ ନ ପାଉ ଏ ଯନ୍ତ୍ରାମଣ୍ଡଳେ ।

୩

ଅହା ମୋ ପ୍ରାଣଦାୟିନୀ ଦୁଃଖିନୀ ଜନନୀ
ମୋହପାଇଁ ଭାବୁଥିବେ ଦିବସ ରଜନୀ.
କାହିଁ ଗଲା ପୁତ୍ର ମୋର   ଏ ପୁର କଲା ଅନ୍ଧାର
ଏହି କଥା ରଟୁଥିବେ ହୋଇ ବାତୁଳାନୀ
ମଳିନବସନୀ ଅହା ମଳିନବଦନୀ
ମତେ ଦେଖି ହେବେ ସତେ ଆନନ୍ଦବର୍ଷିଣୀ

୪

ଅହା ମୋର ଭ୍ରାତାଗଣ ଥିବେ ଶୟ୍ୟାଗତ,

ଅଙ୍ଗଣରେ ବହୁଥିବ ନିଃଶ୍ୱାସ ନିସୃତ
ଡାକୁଥିବେ ଆର୍ତ୍ତସ୍ୱରେ    ପ୍ରଭୁ ଶ୍ରୀ ଜଗଦୀଶ୍ୱରେ
ମାଗୁଥିବେ ମୋ ପୁଅକୁ ଦଅ ହେ ତୁରିତ
ଏମନ୍ତ ସମୟେ ମୁଁ କି ହେବି ତହିଁ ସ୍ଥିତ
କୋଳାଗତ କରି ସେହୁ ହେବେ ଆନନ୍ଦିତ ।

୫

ମୋ ଜୀବନ ଧନ ସବୁ ମୋର ବନ୍ଧୁଗଣ
ମୋ ବିହୀନେ ହେଉଥିବ ତାଙ୍କ ମନ ଛନ
ପଢୁଥିବ ମୋର କଥା    ହୃଦେ ଲଭୁଥିବେ ବ୍ୟଥା
ଈଶ୍ୱରଙ୍କୁ କରୁଥିବେ ମୋର ନିବେଦନ
ଏମନ୍ତ ସମୟେ ତହିଁ କରି ଆଗମନ
ହରିବି କି ସେହୁ ବ୍ୟଥା ଦେଇଣ ଦର୍ଶନ ।

୬

ସାଇ ପଡ଼ୋଶୀ ଆଦି ଯେ ଗ୍ରାମବାସୀଗଣ
ଯେତ୍ନ କରୁଥିଲେ ମତେ ସ୍ନେହେ ଦରଶନ
ଦଳ ଦଳ ହୋଇ ବସି    ଭାବୁଥିବେ ଦିବା ନିଶି
ଏ ମନ୍ଦଭାଗ୍ୟର ହେଲା କି ଦୁଃଖ ଘଟନ
ହେବ କି ଏ ଜନ୍ମେ ତାର ପୁଣି ଉଦ୍ଧାରଣ
ମତେ ଦେଖି ଅଚମ୍ଭିତ ହେବେ ସେ ତକ୍ଷଣ ।

୭

ଗ୍ରାମଉପବନେ ଆଉ କରିବି ଭ୍ରମଣ
ମନ୍ଦମନ୍ଦ ବହୁଥିବ ଶୀତସମୀରଣ
ନାନା ପୁଷ୍ପମକରନ୍ଦ    ଘ୍ରାଣେ ଦେଉଥିବ ଗନ୍ଧ
ଝରମର ଶବ୍ଦ କର୍ଣ୍ଣେ ହୋଇବ ଶ୍ରବଣ

ଗୁଣୁଗୁଣୁ ଗାଉଥିବେ ମଧୁକରଗଣ
ଲତା ଗୁଳ୍ମ ହୋଇଥିବେ ନୟନ ରଞ୍ଜନ ।

୮

ସମୁଦ୍ରବାହିନୀ ଅହା ଗ୍ରାମର ତଟିନୀ
କଳକଳ ଯାର ଜଳ ସଦା କରେ ଧ୍ୱନି
କର୍ଣ୍ଣପଥେ ଯାଏ "ଭଗ୍ନୀ" ବଙ୍କାନ ନୟନ ଧର
ତାର ତୀରେ ସ୍ତୁଗ୍‌ବଲୀ ଅହା କି ଗଠନୀ ।
ଭାବୁକଜନର ମନ ନିଏ ଯେହୁ କିଣି
ପାନ୍ଥ କି ଦେଖିବେ ତାହା ମୋ ନୟନବେନି ।

୯

ଗ୍ରାମର ନିକଟବର୍ତ୍ତୀ ଉନ୍ନତପର୍ବତ
କରନ୍ତ ସତେ ଗଗନ ଯେହ୍ନ ଦ୍ୱିଖଣ୍ଡିତ
ତରୁଗୁଚ୍ଛରେ ଶିଖର ଅଟେ ଅତି ମନୋହର
ଅନୁପମ ଶୋଭାଗ୍ରଣି ଯା ଦେହେ ମଣ୍ଡିତ
ଯହିଁ ଜାତ ନିର୍ଝର, ହ୍ରଦ, ସରସୀ, ସରିତ
ପାନ୍ଥ କି ଏ ଜନ୍ମେ ତାହା ହେବ ବିଲୋକିତ ।

୧୦

ସ୍ୱଦେଶର ରାଜଧାନୀ ମର୍ତ୍ତ୍ୟେ ଅତୁଳିତ
ଅଳକାପୁରୀ ଯାହାକୁ ଅଟେ ପରାଜିତ
ମଣି ମାଣିକ୍ୟ ଖଚିତ ଅନ୍ତରେ ଐଶ୍ୱର୍ଯ୍ୟାନ୍ୱିତ
ଅପୂର୍ବ ସୁନ୍ଦର ସୌଧମାଳା ବିରାଜିତ
ବୀରେ, ରାଜା, ଧନୀ, ମାନୀ ପଣ୍ଡିତେ ପୂରିତ
ଏ ଦୀନ ଲୋଚନ ତହିଁ ହେବ କି ପତିତ ।

୧୧

ମୋ ବିନତି ଶୁଣ ଶୁଣହେ ନୀଳରତ୍ନାକର
ପୃଥିବୀର ଚତୁଃପାର୍ଶ୍ୱେ ପ୍ରବେଶ ତୁମ୍ଭର
ତବଯୋଗେ ନରଗଣ ପାଉଛନ୍ତି ବହୁ ଧନ
ଦେଶର ସଭ୍ୟତା ବୃଦ୍ଧି ହୁଏ ନିରନ୍ତର
ଥରେ ମାତ୍ର ଏ ଦୁଃଖିକି ତୁମ୍ଭେ ଦୟା କର
ନଗ୍ରପଦେ ଉପକୂଳେ ନେଇଣ ଉତ୍ତର ।

୧୨

ମୋର ନିବେଦନ ବାରେ ଶୁଣ ସମୀରଣ
ଜଗତପ୍ରାଣ ନାମକୁ କରିଛ ଧାରଣ
ଏ ଦୁଃଖିର ରଖ ପ୍ରାଣ ହେବ ତବ ଯଶ ମାନ
ଉଡ଼ାଇ ଆକାଶପଥେ ନିଅ ହେ ବହନ
ପର୍ବତ ଉଠାଅ ତୁମ୍ଭେ ଅତି ବଳବାନ
ଏ ନୁହେ କଠିନ ହେବ ସହଜେ ସାଧନ ।

୧୩

ଅହେ ଦିନକର ମୋର ଶୁଣ ନିବେଦନ
ଏଥି ନଗ୍ରଶୃଠାରେ ପକାଅ ନୟନ
କେତେ ଜଳରାଶି ନିତି କରୁଛ ଆକାଶେ ସ୍ଥିତି
ସମୁଦ୍ର ସରିତ ସର କରିଣ ଶୋଷଣ
ମତେ ଦେଖି ଟେକି ଥରେ ଉଠାଅ ଗଗନ
ପବନ ସାହାଯ୍ୟେ ହେବ ମୋଗୃହଗମନ ।

୧୪

ଲକ୍ଷ୍ମୀକାନ୍ତଙ୍କ ଆଶା ଯୋଗୁଁ କରେ ମ ବିନତି
ଏ ସବୁ ଜଡ଼ପଦାର୍ଥ କି ତାଙ୍କ ଶକତି

ଯେହୁ ନିତ୍ୟ ନିର୍ଗୁଣର    ଯେ ଅନ୍ତର୍ଯ୍ୟାମୀ ଠାକୁର
ସନାତନ ନିରଞ୍ଜନ ଅଖିଳର ପତି
ଯେବେ ଦୟା କରି ମୋତେ ଦେବେ ସେ ମତି
ତେବେତ ପାର ହୋଇବି ଏ ନୀଳାମ୍ବୁପତି ।

---

## ପୁରୁଷୋତ୍ତମର କେତେକ ଦୃଶ୍ୟ ।

ଆସ ଆସ ଦର୍ଶକ ଉଲ୍ଲାସ ହୋଇ,
କେତେ ଶୋଭା ଦେଖିବ ମନ ପୂରାଇ ।
ଦେଖ ସୁରମ୍ୟ ସର ଗୋଟେ ଏଠାରେ,
ନରେନ୍ଦ୍ର ନାମ ଯାର ଅଛି ମହୀରେ ।
କେଡେ ପ୍ରଶସ୍ତ ଏହି ସୁମନୋହର,
ଦେଖି ଉଲ୍ଲାସ ହୁଏ ହୃଦୟାଗାର ।
ଚାରି ପାଶେ ସୋପାନ ଶିଳାଗ୍ରଥିତ,
ନିବିଡ଼ ପ୍ରାଚୀରରେ ଅଛି ବେଷ୍ଟିତ ।
ସରସୀ ଜଳେ ରାଜହଂସମାନଙ୍କର,
ସନ୍ତରଣ କରନ୍ତି କି ପଦ୍ମାନ୍ତର ।
ପୁଣି ଦର୍ଶକ ଦେଖ ଚାରି ପାଶରେ,
ଅସଂଖ୍ୟ ଯାତ୍ରିଗଣ ଉଲ୍ଲାସଭରେ ।
କରୁଅଛନ୍ତି କେତେ ସ୍ନାନ ମାର୍ଜନ,
କେବା ତର୍ପଣ ଯୋଗଧ୍ୟାନେ ମଗନ ।
ଚାଲ ଦର୍ଶକ ପୁଣି ଏ ସ୍ଥାନ ଛାଡ଼,
ବିସ୍ତୀର୍ଣ୍ଣ ବଡ଼ଦାଣ୍ଡ ପଥକୁ ମାଡ଼ ।
ସମ୍ମୁଖେ ଦେଖ ଅନାଥଙ୍କ ସଦନ,
ଈଶ୍ୱର ଆଜ୍ଞା ଧରି ବାଟନ୍ତି ଦାନ ।

ଧନ୍ୟ ଈଶ୍ୱରଙ୍କର କିବା ମହିମା,
ଜୀବରେ ତାଙ୍କ ଦୟା କେ କରେ ସୀମା ।
ସମ୍ମୁଖେ ଦେଖୁଅଛ ଯେଉଁ ସଦନ
ଏ ଅଟେ ଶ୍ରୀକ୍ଷେତ୍ରେଶ୍ୱରଙ୍କର ଭବନ ।
ଗଜପତିଙ୍କ ଧ୍ୱଜା ମହୀତଳରେ,
ଉଡ୍ଡୀୟମାନ ହେଉଥିଲା କାଳରେ ।
ସେ ଏବେ ପେଡ଼ାଁସର୍ପ ସଙ୍ଗେ ସମାନ,
କାଳ ବେଳର ଖେଳ କେ କରେ ଅନ ।
ଚାଲ ଚାଲ ଦର୍ଶକ ଛାଡ଼ ଏ ସ୍ଥାନ,
ଦେଖ ଅରୁଣସ୍ତମ୍ଭ ଦଣ୍ଡାୟମାନ ।
କେମନ୍ତ ସ୍ଥୂଳ ଏହା କି ଉଚ୍ଚତର,
ବୋଲନ୍ତି ଲୋକେ ସବୁ ଖଣ୍ଡେ ପ୍ରସ୍ତର ।
କ୍ରମେ ଏ ସିଂହଦ୍ୱାର ଦେଖ ଦର୍ଶକ,
କେଡ଼େ ଉନ୍ନତ ଏହା ଦେଖିଲେ ଦକ୍ଷ ।
ଭିତରେ ଦେଖ ଅସି ବଡ଼ ଦେଉଳ,
ଅତି ଉନ୍ନତ ପୁଣି କେଡ଼େ ସୁବିଳ ।
ପୂର୍ବକାଳରେ ରାଜା "ଅନଙ୍ଗଭୀମ",
କରି ଅଛନ୍ତି କୀର୍ତ୍ତି ଏ ଅନୁପମ ।
ଏଥିରୁ ଜଣାଯାଏ ଉତ୍କଳ ଲୋକ,
ଶିଳ୍ପନୈପୁଣ୍ୟ ଥିଲେ କେଡ଼େ ବିବେକ ।
ଚତୁର୍ଦ୍ଦିଗରେ ଦେଖ ଅସଂଖ୍ୟ ଜନ,
କରନ୍ତି ସଙ୍ଗେ ମିଶି ଅନ୍ନଭୋଜନ ।
ଜାତିଭେଦ ସଂସ୍କାର ନାହିଁ ଏଠାରେ,
ଶୂଦ୍ର ଛୁଇଁଲେ ଦ୍ୱିଜ ଭୋଜନ କରେ ।

ଧନ୍ୟ ଧନ୍ୟ ଏ ପ୍ରଥା ପ୍ରଶଂସନୀୟ,
ଯେ ଏହା ଚଳାଇଛନ୍ତି ସେ ମାନନୀୟ ।
ସେ ଲୋକ ଧର୍ମଭାବ ଜାଣନ୍ତି କେହି,
ମୁଁ ଜାଣେ ସେହି ସତ୍ୟଧର୍ମୀ ଅଟଇ ।
ନୋହିଲେ ଏ ଉନ୍ନତ ଭାବ ତାଙ୍କର,
ହୋଇ ନ ଥାନ୍ତା କେବେ ହୃଦମଧର ।
କେଡ଼େ ସୁନ୍ଦର ସ୍ଥାନ ଜଗମୋହନ,
ଚତୁର୍ଦ୍ଦିଗରେ ବସି ଭକ୍ତଗଣ ।
ଈଶ୍ୱରସ୍ତୁତିପାଠମାନ ପଢନ୍ତି,
ଦଣ୍ଡ ପ୍ରଣାମକରି ତହୁଁ ଚଳନ୍ତି ।
ଅହା ତାଙ୍କର ଅଟେ କେଡ଼େ ବିଶ୍ୱାସ,
ଦେଖି ମନେ ଅଶେଷ ମୋର ସନ୍ତୋଷ ।
ଅସ ଦର୍ଶକ ଦେଖ ସ୍ନାନମଣ୍ଡପ—
ଉପରେ ରହି ସିନ୍ଧୁଶୋଭାକଲାପ ।
ଘୋର ଗର୍ଜ୍ଜନେ ସିନ୍ଧୁଜଳ ଉଠୁଚି,
ଜଗନ୍ନାଥଙ୍କୁ ଅବା ଉଚ୍ଚେ ଡାକୁଛି ।
ତରଙ୍ଗମାଳସବୁ କି ଶୋଭା ଧରି,
ନାଚି ଖେଳି ଆସନ୍ତି ଉପର୍ଯ୍ୟୁପରି ।
ଦେଖି ତରଙ୍ଗମାଳ ମନେ ହେଉଛି,
ସକୁଟୁମ୍ବେ ବାସୁକି ଅବା ଘୂରୁଛି ।
ବାଳକରେ ଖେଳନ୍ତି ଖେଳ ଯେସନ,
ଜଳଚରଙ୍କ ଖେଳ ଅଟେ ତେସନ ।
ସାଗରଗର୍ଭୁଂ ଜଳ-କଣା ପବନ,
ଆଣି ଲୋକଙ୍କ ଦେହେ କରେ ଲେପନ ।

ଦେଖି ଏ ଅନୁପମ ଶୋଭାସ୍ୱର୍ଗରୁଚି,
ହୃଦସାଗରୁ ଉଠେ ଭାବଲହରୀ ।
ଧନ୍ୟ ଧନ୍ୟ ସେ କର୍ତ୍ତା ଏ ଶୋଭାସୃଷ୍ଟି,
କରୁଅଛନ୍ତି ପ୍ରଭୁ ବୈକୁଣ୍ଠବାସୀ ।

---

## ଇନ୍ଦୁମତୀ ସ୍ୱୟମ୍ବର ( ରଘୁବଂଶ )

୧

ଯଶସ୍ୱୀ ପଣ୍ଡିତ ମହୀଭୂଷଣ
ବିଦର୍ଭାଧିପତି ଭୋଜରାଜନ
ସ୍ୱସା ଇନ୍ଦୁମତୀ ହେଲେଣି ଯୁବତୀ
ଜାଣି ସ୍ୱୟମ୍ବର କଲେ ବିଧାନ
ସଭାସ୍ଥଳ ହେଲା ଅତି ଶୋଭନ
ମଞ୍ଚରେ ବସିଲେ ନୃପେନ୍ଦ୍ରଗଣ ।

୨

ବାଜିଲା ଶୁଭସୂଚକ ବାଦନ
କମ୍ପିଲା ଶବଦେ ବିଶ୍ୱଭୁବନ
ଜଗତମୋହିନୀ ଭୋଜଙ୍କ ଭଗିନୀ
ହେଲେ ନାନା ଅଲଙ୍କାରେ ମଣ୍ଡନ,
ସଙ୍ଗରେ ସୁନନ୍ଦା ତାଙ୍କୁ ଘେନିଣ
ସଭାମନ୍ଦିରକୁ କଲା ଗମନ ।

୩

ଅନୁପମରୂପଲାବଣ୍ୟବତୀ
ଦେଖି ସେ ବାଳାଙ୍କୁ ସବୁ ନୃପତି
ନିମେଷଶୂନ୍ୟରେ ଏକନୟନରେ

ଗୃହଁଲେ ହୋଇଲା ଚଞ୍ଚଳମତି
କେବଳ ଅସନେ ଶରୀରସ୍ଥିତ
ମନ ନେଇ କଲେ ତହିଁ ବସତି ।

୪

କଣ୍ଠେ କଲେ କେ କର ନିବେଶ
ରଖିଲେ କେ ଯଥାସ୍ଥାନରେ ବାସ
ନୃପନନ୍ଦନର ଭୂଷଣକର
ଯଦ୍ୟପି ହୋଇବ ଅମୃତ ବେଶ ।
ବ୍ୟର୍ଥ ହେବ ଏ ସକଳ ପ୍ରୟାସ
ବୃଥା ହେବ କନ୍ୟା ଲଭିବା ଆଶ ।

୫

କେତେ ନୃପସୁତ ଗୌରବେ ପୁଣି
ନୟନଭଙ୍ଗୀ କୋମଳଗୃହାଣି
ବଦ୍ଧିତ ବିଳାସ କଲେକ ପ୍ରକାଶ
ଲଭିବା ଆଶାରେ ରାଜନନ୍ଦନୀ
କନ୍ୟାଙ୍କୁ ସୁନନ୍ଦା ପ୍ରତିହାରିଣୀ
ସମ୍ବୋଧି କହିଲା ମଧୁରବାଣୀ ।

୬

ଏହି ମହୀପାଳ ମଗଧେଶ୍ୱର
ପୁଷ୍ପପୁର ରାଜଧାନୀ ଯାହାଙ୍କର
ଦେଖ "ପରନ୍ତପ" ପ୍ରକାଶି ପ୍ରତାପ
ସାର୍ଥ କରିଛନ୍ତି ନାମ ନିଜର
ପ୍ରଜାଙ୍କ ପାଳନେ ଅତି ତତ୍ପର
ଦୈବକାର୍ଯ୍ୟେ ରତ ଏ ନୃପବର ।

୭

ଗଗନମଣ୍ଡଳେ ତାରକାପନ୍ତି
ଥାଇ ପ୍ରୟୋଜନ କାହିଁ ନୁହନ୍ତି
ଏକା ନିଶାପତି ହେତୁ "ଜ୍ୟୋତିଷ୍ମତୀ"
ଯେସନେ ରାତ୍ରିକି ଲୋକେ ବୋଲନ୍ତି
ମେଦିନୀବକ୍ଷରେ ବହୁ ନୃପତି
ପରନ୍ତପ ହେତୁ ଏ "ରାଜନ୍ୱତୀ" ।

୮

ଯେବେ ମନୋନୀତ କରି ସୁନ୍ଦରୀ
ନାଥ ପତିପଦେ ଏହାଙ୍କୁ ବରି
ନନ୍ଦିନୀ ଶୁଣିଲେ କିଛୁ ନ କହିଲେ
ଗଲେ ଭାବଶୂନ୍ୟ ପ୍ରଣାମ କରି
ସକଳେ ମଣିଲେ ରାଜକୁମାରୀ
ଗଣନା ନ କରି ଅଇଲେ ଫେରି ॥

୯

ସରସୀଲହରୀ ରାଜହଂସୀକୁ
ଏକପଦ୍ମଠାରୁ ଅନ୍ୟପଦ୍ମକୁ
ନିଅଇ ଯେସନ ସୁନନ୍ଦା ତେସନ
ନେଲା ସେ ରୂପସୀ ରାଜବାଳାକୁ
ଅନ୍ୟନରପତିସନ୍ନିଧାନକୁ
ଦେଲା ତାହାଙ୍କର ପରିଚୟକୁ ॥

୧୦

ଅଙ୍ଗଦେଶପତି ଏ ମହାଶୟ
ଏହାଙ୍କ ଐଶ୍ୱର୍ଯ୍ୟ ଅକଥନୀୟ

ସୁରନାରୀଗଣ ଯୌବନ ଲୋକନ
କଲେ ତାହାଙ୍କର ମୋହ ଉଦୟ
ଲକ୍ଷ୍ମୀ, ସରସ୍ୱତୀ ଦୁହିଁଙ୍କ ପ୍ରାୟ
ବର; ଏହାଙ୍କର ହୃଅ ଭୂପସ୍ ।

୧୧

ସୁନନ୍ଦାବଚନ ଶୁଣିଲେ କନ୍ୟେ
ଗଲ ବୋଲି ଠାରୁ ଦେଲେ ନୟନେ
ଅଙ୍ଗଦେଶେଶ୍ୱର ଅପୂର୍ବ ସୁନ୍ଦର
କି ଛବ ଉଦଲ ନନ୍ଦନୀମନେ
ବିମୁଖ ହୋଇଲେ ଭାଙ୍କ ବଚନେ
କିବା ଭିନ୍ନରୁଚି ଲୋକ କେ ଜାଣେ ।

୧୨

ଅବନ୍ତୀନାଥଙ୍କୁ ଦେଖ ସୁନ୍ଦରୀ
ସ୍ୱଭାବେ କେମନ୍ତ ରୂପମାଧୁରୀ
ଏହି ନରବର ମଣିମାଣିକ୍ୟର
ପ୍ରଭାରେ ଜାଜ୍ୱଲ୍ୟ ତପନ ପରି
ସୁବିଶାଳବକ୍ଷ ସୁବେଶଧାରୀ
ଦୀର୍ଘବାହୁ ଅହା କି ମନୋହାରୀ ।

୧୩

ମନରେ ହେଉଛି ଏ ଅନୁମାନ
ସ୍ୱର୍ଗରେ କୌଣସି ଦେବନନ୍ଦନ
ଭୂମିର ଗୁଣରେ ଏ ମର୍ତ୍ତସ୍ଥଳେ
କରିଣ ଅଛନ୍ତି ଶୁଭଗମନ
ଏହାଙ୍କ ପ୍ରଭାଏ ମହେନ୍ଦ୍ରଗଣ

ଅନ୍ତକ ଚରଣେ ସଦା ଶରଣ ॥

୧୪

ଅବନ୍ତୀନାଥଙ୍କ ରାଜଧାନୀରେ
" ମହାକାଳ " ନାମେ ପୀଠସ୍ଥାନରେ
ଅନ୍ତକ ଶଙ୍କର ନିକଟେ ତାହାର
ରାଜପୁର ରମ୍ୟ ହର୍ମ୍ୟ ଉପରେ
ଅବନ୍ତୀପତି ପ୍ରିୟାଙ୍କ ସଙ୍ଗରେ
ପ୍ରମୋଦ ବିହାର ରଜନୀକାଳରେ ॥

୧୫

ଶଙ୍କରଙ୍କ ଶିରଚନ୍ଦ୍ରକରରେ
କୃଷ୍ଣପକ୍ଷର ଘନତମିରେ
କୌମୁଦୀଉତ୍ସବ କର ଅନୁଭବ
କାନ୍ତ ସମସ୍ତ ଆନନ୍ଦ ମନେ
ଏହାଙ୍କୁ କରଗୋ ମୃଗନୟନେ
ସିପ୍ରାନଦୀତୀରରମ୍ୟଉଦ୍ୟାନେ—

୧୬

ପ୍ରିୟତମ ସଙ୍ଗେ ସୁଖେ ବିହର
ଯୌବନଶିରିବ କୃତାର୍ଥ କର
ଯେତେକେ କୁମୁଦିନୀ ଦେଖି ଦିନମଣି
ଅନୁରକ୍ତା ନୋହି ହୁଏ ଅନ୍ତର
ତେତେକେ ଧନୀ ଦେଖି ସେ ନୃପବର
ଅନୁରକ୍ତା ନୋହି ହେଲେ ଅନ୍ତର

୧୭ *

ଏଥୁଅନ୍ତେ ସୁନନ୍ଦା ଯେ ବଚନ ବିସ୍ତାରି
କହିଲା ଋତୁସି ବାଣୀ ଶୁଣ ଗୋ ସୁନ୍ଦରି
ଶୁଣିଥିବ ପୂର୍ବକାଳେ ଥିଲେ ଏକ ମହୀପାଳେ
ସୁବିଖ୍ୟାତ କାର୍ତ୍ତବୀର୍ଯ୍ୟ ନାମ ଯେ ତାଙ୍କର
ଦେବଦତ୍ତପ୍ରସାଦେ ସହସ୍ରଭୁଜଧାରୀ
ବାହୁବଳେ ଅଷ୍ଟାଦଶଦ୍ୱୀପ ଅଧିକାରୀ ॥

୧୮

ମହାରାଜ କାର୍ତ୍ତବୀର୍ଯ୍ୟ ମୃଜନ୍ମର କାଳେ
ଅପରାଧୀ ଜାଣୁଥିଲେ ନିଜଯୋଗବଳେ
ହସ୍ତରେ ଧରି କୋଦଣ୍ଡ ତଦଣ୍ଡେ ଦେବାକୁ ଦଣ୍ଡ
ହୋଇଣ ଅତି ପ୍ରଚଣ୍ଡ ଶମନ୍ତ ଚଳିଲେ
କିସ କହିବା ଅଧିକ ତାହାଙ୍କର ବଳେ
କାରାବାସେ ଦଶଶିର ଥିଲେ ଏକ କାଳେ ॥

୧୯

ସେ ହଗୁବ ବଂଶେ ଜନ୍ମ ଏହି ନରପତି
ସୁଶୀଳ ସୁବୋଧ ଧୀର ପ୍ରଶାନ୍ତ ମୂରତି
ଅନୂପ ଦେଶର ପତି ରାଜଧାନୀ ମାହିଷ୍ମତୀ
ନାମରେ "ପ୍ରଦୀପ" ବୋଲି ଜଗତରେ ଖ୍ୟାତି
ଏହାଙ୍କ ପୁରରେ "ଲକ୍ଷ୍ମୀ" ଅଚଳା ଅତ୍ୟନ୍ତ
ଟେକିଲା ଅପବାଦକୁ ଘୋଷାଇ ଅଛନ୍ତି ॥

୨୦

ବର ପ୍ରସାଦେ "ପ୍ରଦୀପ" ଶାଇ ହୁତାଶନ .

---

* ବନ୍ଦ ଜନକେ କର୍ଷିତ

ଉତ୍ତ ମଣ୍ଡ୍ର ମଦରେ ପର୍ଣ୍ଣଗ୍ରମ ବାଣ
ଶୁଣ ଅଗୋ ବର୍ନନେ   ଯେବେ ବସି ବାଢ଼ାଯୃନେ
ନର୍ମଦା ନଦୀର ଶୋଭା କରବ ଲୋଚନ
ତେବେ ଝଟ "ବରମାଳା" ଏହାଙ୍କୁ ଅର୍ପଣ
ଏତେକ କହି ସୁନନ୍ଦା ଚୋଇଲ ମଉନ ॥

୨୧

ଶରଦେ ମେଘାବରଣମୁକ୍ତଶଶଧର
କମଳନୀପକ୍ଷେ ଯେହ୍ନେ ଅସନ୍ତୋଷ କର
ତେସନ୍ ଅନୂପ ଭୂପ   ପ୍ରିୟଦର୍ଶନ ପ୍ରଦୀପ
ହେଲେ ନାହିଁ ତାହାଙ୍କର ନେତ୍ରାନନ୍ଦକର
ଦେଖିଣ ସୁନନ୍ଦା ପୁଣି ଅନ୍ୟ ନୃପବର
ନିକଟକୁ ନେଇଯାଇ କହିଲା ମଧୁର ।

୨୨

ଯମୁନା ନଦୀର କୂଳେ ଶୁଣ ଗୋ ସୁନ୍ଦରୀ
"ମଥୁର୍" ନାମରେ ଅଛୁ ମନୋହର ପୁରୀ
ନୀପବଂଶେ ସମ୍ଭୂତ   କୀର୍ତ୍ତିବନ୍ତ ଗୁଣାନ୍ୱିତ
ଏହି ବୀର "ସୁଷେଣ" ସେ ପୁରୀଦଣ୍ଡଧାରୀ
ସିଦ୍ଧାଶ୍ରମେ ଜନ୍ତୁଗଣ ହିଂସା ପରିହରି
ଥିଲେ ପରି; ଗୁଣମାନେ ଅଛନ୍ତି ତାଙ୍କରି ॥

୨୩

ଯମୁନାନଦୀଗର୍ଭରେ "କାଳୀୟ" ନାମରେ
ଏକ ମହା ଅଜଗରସର୍ପ ବାସ କରେ
ଯିଏ ବିନ୍ଧ ଏକବାରେ   ଖଗରାଜଙ୍କ ଭୟରେ
ପଳାଇ ଶରଣ ଗଲେ ରାଜାଙ୍କ ଛାମୂରେ

ମହାଗ୍ରନ୍ଥ କାଳୀପୂରଂ ମୁକ୍ତିପ୍ରଦାନରେ
ଲଭିଛନ୍ତି ଏ ଅମୂଲ୍ୟ ମଣି ପୁରସ୍କାରେ ॥

୨୪

କଣ୍ଠରେ "ସୁଦର୍ଶନ" ହାର ମଣିକ ଧାରଣ
କରିବାରୁ ବଧୂକନ୍ତ କେତେ ଶୋଭାବନ
କୌସ୍ତୁଭଧାରୀଙ୍କ ଗର୍ବ ହୋଇଅଛି ଏଥି ଖର୍ବ
ଏହାଙ୍କୁ ପତିପଦରେ କଲେ ଗୋ ବରଣ
ନନ୍ଦନକାନନ ସମ ଯେଉଁ "ବୃନ୍ଦାବନ"
ତହିଁରେ ସମୁଖି ସୁଖେ କରିବ ଭ୍ରମଣ ॥

୨୫

ଅଗ୍ରବର୍ତ୍ତୀ ଶିଖରର ଏକପାର୍ଶ୍ୱ ଦେଇ
ସ୍ରୋତସ୍ୱତୀ ନଦୀ ଯେହ୍ନେ ଭଙ୍ଗିଣ ଗମଇ
ସେହ୍ନପରି ଇନ୍ଦୁମତୀ କଲେ ତହିଁ ବନ୍ଦଗତି
ବଧୂଅନନିକି ଚାହିଁ ସୁନନ୍ଦା କହଇ
ମହେନ୍ଦ୍ରଗିରି ସମୃଦ୍ଧ ନିକଟେ ଅଛଇ
ଏହି ହାର ଅଧୀଶ୍ୱର ଅଟନ୍ତି ଗୋ ତହିଁ ॥

୨୬

ଯେବେ ଏହାଙ୍କ ରମଣୀ ହେବ ଗୋ ସୁନ୍ଦରି
ବାତାୟନେ ଦେଖୁଥିବ ସମୁଦ୍ରଲହରୀ
ତାଳୀବନର ମର୍ମର ଧ୍ୱନି ଶୁଣିବ କର୍ଣ୍ଣର
ସାଗରତୀରଲବଙ୍ଗପୁଷ୍ପଗନ୍ଧହରି
କେତେ ସୁଖ ଉରସ୍ୱରେ ଲଭିବ ସୁନ୍ଦରି
ନଟଳ ଏ ବାକ୍ୟେ ବାଳା ଗଲେ ଅନୁସରି ।

ସୁନନ୍ଦା ଇନ୍ଦୁମତୀଙ୍କି କଲା ସମ୍ବୋଧନ
ଖଞ୍ଜନାକ୍ଷି ବାରେ ଏଣେ ପକାଅ ନୟନ
ସମୁଦ୍ର ଅନତି ଦୂରେ ମଳୟଗିରି ପାଶରେ
"ଉରଗ" ନାମରେ ପୁରୀ ଅଛି ବିଦ୍ୟମାନ
ପାଣ୍ଡ୍ୟ ରାଜ୍ୟ ଅନ୍ତର୍ଗତ ଅଟଇ ସେ ସ୍ଥାନ
ପାଣ୍ଡ୍ୟ ନାମରେ ବିଖ୍ୟାତ ଏ ତହିଁ ରାଜନ ॥

୨୭

ମହାରାଜ ପାଣ୍ଡ୍ୟଙ୍କର ତପକୁ ସାଧିଣ
ଅଗସ୍ତ୍ୟ ତୋଷେ କରଥିଲେ ବଶ୍ୟତାବିଧାନ
ତାଙ୍କଠାରୁ ଏକଶର ପାଇଛନ୍ତି ପୁରସ୍କାର
ଶଙ୍କିତ ସେ ଶର ଯୋଗେ ସର୍ବ ଶତ୍ରୁଗଣ
ସୁରପୁରଜୟୀଲଙ୍କେଶ ଏକଦା ରାବଣ
ଭୟେ ସନ୍ଧି କରିଗଲେ ଏହାଙ୍କ ସଙ୍ଗେଣ ॥

୨୮

ଏ ନୃପତି ପ୍ରିୟା ହେଲେ ଏହାଙ୍କ ସହିତ
ମଳୟତଟ୍ୟକାରେ ହୋଇଣ ଉଥିତ
ତାମ୍ବୂଲଲତାକଲିତ ଗୁବାକବୃକ୍ଷଶୋଭିତ
ଚନ୍ଦନତରୁରେ ଏଲାଲତା ସୁମଣ୍ଡିତ
କେମନ୍ତ ଅପୂର୍ବ ଶୋଭା ଦେବତାବାଞ୍ଛିତ
ଦେଖି ଗୋ ଏଣନୟନ ହୋଇବ ମୋହିତ ॥

୨୯

ଇନ୍ଦୀବର ପତ୍ର ଶ୍ୟାମକାନ୍ତି ଏହାଙ୍କର
ଗୋରୋଚନା ତୁଲ୍ୟ ତୁମ୍ଭେ ସ୍ୱବର୍ଣ୍ଣେ ଗଉର

ଏହାଙ୍କ ଅଙ୍କଶାୟିନୀ    ହେଲେ ଗୋ ରାଜନନ୍ଦନ
ସଚପଳା ମେଘମାଳା କର ପରିହର
ତୁମ୍ଭେ ଦୁହିଁଙ୍କ ପକ୍ଷରେ ହୋଇବ ସୁନ୍ଦର
ଏତେକ ସୁନନ୍ଦା କହି ହେଲା ତହିଁ ସ୍ଥିର ॥

୩୦

ସଞ୍ଚାରିଣୀ ଦୀପଶିଖା ଗହ୍ୱରେ ଯେସନ
ଅତିକ୍ରାନ୍ତ ଗୃହାବଳୀ କରେ ତମୋଚ୍ଛନ୍ନ
ଇନ୍ଦୁମତୀଙ୍କ ଗମନେ    ପୃଷ୍ଠଗତ ରାଜଗଣେ
ନୈରାଶେ ମ୍ଳାନବଦନ ହୋଇଲେ ତେସନ ।
କନ୍ୟାଙ୍କ ଆଗମନକୁ କରି ପ୍ରତୀକ୍ଷଣ
ଆନନ୍ଦେ ରହିଲେ ପୁରୋବର୍ତ୍ତୀ ରାଜଗଣ ॥

୩୧

ଭୁବନମୋହିନୀ ବାଳା ସେ ନୃପଦୁହିତା
ରଘୁପୁତ୍ର ଅଜଙ୍କର ହେଲେ ସନ୍ନିହିତା
ଦକ୍ଷିଣବାହୁସ୍ପନ୍ଦନେ    ବରଣଭ୍ରମଭଞ୍ଜନେ
ଯୁବରାଜ ଅଜ ହେଲେ ନିଃସନ୍ଦେହଚେତା
ମଧୁକରୀ ସହକାରେ ଯେସନେ ଅନୁରତା
ରହିଲେ; ନୋହିଲେ ଧନୀ ଅନ୍ୟେ ଅକାଙ୍କ୍ଷିତା ॥

୩୨

ତୁଳିତ ଅଜଙ୍କଠାରେ ଇନ୍ଦୁମତୀମନ
ଜାଣି ସୁନନ୍ଦା ବିସ୍ତାରି କୁଳର ବର୍ଣ୍ଣନ
ଏହି ଯେ ନୃପନନ୍ଦନ    କନ୍ଦର୍ପରୂପଗଞ୍ଜନ
କୁମାରି ଏହାଙ୍କୁ ମନେ ସାମାନ୍ୟ ନ ମଣ
ସୂର୍ଯ୍ୟବଂଶେ ମନୁନାମେ ଥିଲେକ ରାଜନ

ମହାପୁରୁଷ ଇକ୍ଷ୍ୱାକୁ ତାହାଙ୍କ ନନ୍ଦନ ॥

୩୪

ଏହି ବଂଶେ ଜାତ ପୁରଞ୍ଜୟ ନରପତି
ତିଲୋକେ ବିଦିତ ଅଛି ଯାହାଙ୍କର କୀର୍ତ୍ତି
ମହାରାଜ ପୁରଞ୍ଜୟ  ପୁରନ୍ଦରଙ୍କର ସଙ୍ଗ
ଐରାବତରେ ଅଗ୍ରେହି ଅସୁର ମାରନ୍ତି
ଥରେ ଅସୁରଙ୍କୁ ଯୁଦ୍ଧେ ନ ପାଇ ନୃପତି
ପିନାକୀବେଶକୁ ଧରି ଜୟ କରିଛନ୍ତି ॥

୩୫

ବୃଷକକୁଦରେ ବସି କରିଥିଲେ ରଣ
ତହୁଁ କକୁସ୍ଥ ନାମକୁ କଲେକ ଧାରଣ ।
କୋଶଳର ରାଜଗଣ  କାକୁସ୍ଥ ନାମ ପ୍ରଦାନ
କଲେ ଆପଣା ବଂଶକୁ ପବିତ୍ର ଭାବିଣ
କୁଳପ୍ରଦୀପ ଯଶସ୍ୱୀ ସଦ୍‌ଗୁଣସମ୍ପନ୍ନ
କକୁସ୍ଥ କୁଳରେ ଜାତ ଦିଲୀପ ରାଜନ ॥

୩୬

ତାହାଙ୍କ ତନୟ ରଘୁ ଜଗତେ ବିଦିତ
ତାଙ୍କ ଯଶବର୍ଣ୍ଣନ ଅମୃତ ସାଧାରିତ
ଜଗଦାନନ୍ଦବର୍ଦ୍ଧକ  ମହାତେଜା ସୁଦେବଙ୍କ
ରଘୁତନୟ ଏ ଅଜ ଅତି ସୁଶିକ୍ଷିତ
ଏହାଙ୍କୁ କରିଣ ରଘୁ ରାଜ୍ୟେ ପ୍ରତିଷ୍ଠିତ
ଯୋଗସାଧନେ ନିବିଷ୍ଟ କରନ୍ତି ଚିତ୍ତ ॥

୩୭

ବିଦର୍ଭରାଜକନ୍ୟାର କରୁଣ ବହନ

ସୁନୟନେ କରୁଛନ୍ତି ତାହା ସମ୍ପାଦନ
ଦେଖ ଗୋ ଚନ୍ଦ୍ରବଦନ, ନୃପକୁଳଚୂଡ଼ାମଣି
ଅପୂର୍ବ ସୁନ୍ଦରରୂପ କି ନବଯୌବନ
ଏହାଙ୍କ କଣ୍ଠରେ ମାଳା କଲେକ ଅର୍ପଣ
ହେବ ଦୁହଙ୍କର ଯୋଗ ମଣିରେ କାଞ୍ଚନ ॥

୬୮

ସ୍ୱାଭାବିକ ଲଜ୍ଜା ହେତୁ ସେ ମନୋହାରଣୀ
ମାଳା ଅର୍ପିବାକୁ କହି ନ ପାରଲେ ବାଣୀ
ତାଙ୍କ ମନୋଭାବ ଜାଣି ନ ଜାଣିଲାପରି ପୁଣି
ସୁନନ୍ଦା ବୋଇଲା ଅଗୋ ନରେନ୍ଦ୍ରନନ୍ଦନ
ଅନ୍ୟ ନୃପଙ୍କର ହୁଅ ସମୀପବର୍ତ୍ତିନୀ
କଟାକ୍ଷନିକ୍ଷେପେ ମନା କଲେ ତାକୁ ଧନୀ ॥

୬୯

ଉପମାତା ଧୃଷ୍ଟତାକୁ ଚାହିଁଲେ ମନରେ
ବରମାଳା ନେଇ ଦିଅ କହିଲେ ସୁସ୍ୱରେ
ସୁନନ୍ଦା ଆଦେଶ ପାଇ ଅଜଙ୍କ ନିକଟେ ଯାଇ
ଶୁଭପୁଷ୍ପମୟୀ ମାଳା ଅର୍ପିଲା କଣ୍ଠରେ
ଇନ୍ଦୁମତୀବାହୁପାଶ ଅଛି ମୋ ଗଳାରେ
ଏହି ବୋଧ ଯୁବରାଜ କଲେ ଆନନ୍ଦରେ ॥

୭୦

ଶରଚ୍ଚନ୍ଦ୍ରେ ଉପଗତା ଯେହ୍ନେ କୁମୁଦିନୀ
ଜଳନିଧିଅନୁଗତା ହୁଏ ମନ୍ଦାକିନୀ
ସେହିପରି ସମଗୁଣ ଏ ବରକନ୍ୟାବରଣ
ପୁରବାସିଙ୍କ ମୁଖରୁ ହେଲା ଏହିବାଣୀ

ଅଜଙ୍କ ପ୍ରଶଂସା ତହିଁ ରାଜାମାନେ ଶୁଣି
ବ୍ୟଥିତ କୁଣ୍ଠିତ ହେଲେ ତାହା କଷ୍ଟ ମଣି ॥

୪୧

ପ୍ରାତଃକାଳେ ଏକପାର୍ଶ୍ୱେ ପଦ୍ମ ପ୍ରସ୍ଫୁଟିତ
ଅନ୍ୟପାର୍ଶ୍ୱେ କୁମୁଦିନୀ ହେଲେ ନିମିଳିତ
ଯେଉଁପର "ସରୋବର" ହୋଇଥାଏ ଶୋଭାକର
ସେହିପରି ସ୍ୱୟମ୍ବରସ୍ଥଳ ସୁଶୋଭିତ
ବରପକ୍ଷଜନେ ତହିଁ ହେଲେ ପ୍ରମୋଦିତ
ଅନ୍ୟପକ୍ଷରାଜଗଣ ହୋଇଲେ ଲଜ୍ଜିତ ।

---

ଧ୍ରୁବଙ୍କ ପଳାୟନ ଜନିତ
ସୁନୀତିଙ୍କର ରୋଦନ ।

୧

ଅଭାଗିନୀ ଧ୍ରୁବମାତା ବିରସବଦନେ
ବ୍ୟାକୁଳିତ ହୋଇ ଦୁଃଖେ କରନ୍ତି ରୋଦନ
ହାୟ ! ଦୀନବନ୍ଧୋ ତାତ ଧ୍ରୁବ ଅଦର୍ଶନେ
ଅଶ୍ରୁପରିପୂର୍ଣ୍ଣ ହେଲା ଯୁଗଳଲୋଚନ;
କାହିଁ ଗଲୁ ମୋ ଜୀବନ ରଙ୍କୁଣୀର ଧନ
ଏ ଅରଣ୍ୟମଧ୍ୟେ ମୋତେ କରି ଏକାକିନୀ,
ଦୀର୍ଣ୍ଣ ହେଉଛି ହୃଦ ରେ ପ୍ରିୟଦର୍ଶନ
ବୋଲି ଛିନ୍ନତରୁପରି ଭୂତଳଶାୟିନୀ;
ସୁନୀତିରୋଦନ ଶୁଣି ନିବିଡ଼କାନନ,
ପ୍ରତିଧ୍ୱନି ଛଳେ କଲା ସୁଦୀର୍ଘ ରୋଦନ

୨

କ୍ଷଣାନ୍ତରେ ଧ୍ରୁବମାତା ଚୈତନ୍ୟ ଲଭିଲେ

ଦୀର୍ଘସ୍ୱରେ କୋହଳରେ କଲେକ ରୋଦନ,
ଜୀବନର ମୁଖଚନ୍ଦ୍ର ଆଉ ନ ଦେଖିଲେ
ଏ ଜୀବନ ରଖି ହେବ କିସ ପ୍ରୟୋଜନ;
ଶୁଣ ଶୁଣ ବସୁମତି ମୋର ନିବେଦନ
ଦୟା କରି ଦ୍ୱିଖଣ୍ଡିତ ହୁଅ ଗୋ ମେଦିନ,
ଜୀବନର ସବୁ ଆଶା କରି ଉଚ୍ଛେଦନ,
ତବଗର୍ଭେ ପ୍ରବେଶିବ ଏହି ଅଭାଗିନୀ ।

୩

ଦିଗନ୍ତର ସମୁନ୍ନତ ଅହେ ତରୁଶ୍ରେଣି
ଦେଖିଚ କି ଗୁଳ୍ମ ସଙ୍ଗେ ରଙ୍କୁଣୀଧନକୁ,
କହିଦିଅ ତୃପ୍ତ ହେବେ ମୋର ଚକ୍ଷୁ ବେନି
ଦେଖି ସୁଖେ କୋମଳାଙ୍ଗ କୁମାର ଧ୍ରୁବକୁ;
ତରୁନିକେତନେ ଅଛ ଯେ ବିହଙ୍ଗଦଳ
ଏ ଦୁଃଖିନୀ ଦୁଃଖବାର୍ତ୍ତା କରରେ ଶ୍ରବଣ,
ଧ୍ରୁବ ବିନା ଏ ଜୀବନ ହେଉଛି ବିକଳ
ଧ୍ରୁବକୁ କି ଦେଖିଅଛ କହି ରଖ ପ୍ରାଣ ।

୪

ଭୁବନବାହିନୀ ମାତଃ ଅଗୋ ସ୍ରୋତସ୍ୱତି
ତବ ସ୍ରୋତେ ବହମାନ ଧ୍ରୁବ କି ମୋହର,
ରଖିଚ କି ଲୁକ୍କାୟିତ କରି ମୋ ସମ୍ପତ୍ତି
କହି ଦିଅ ମାତଃ ଆଉ ବିଳମ୍ବ ନ କର;
ଶୁଣ ମାତଃ ବନଦେବି ବନଗ୍ରହେଶ୍ୱରି ,
ତବ ଦାସୀ ଅଭାଗିନୀ ଧ୍ରୁବର ଜନନୀ,
ଦାସୀ ପୁତ୍ରର ଭାର କିଏ ନେଲା ହରି

ଧୂଳିଧୂସରିତଦେହ ଲୁଠଇ ଧରଣୀ;
ମାତଃ ତୁମ୍ଭେ ଜ୍ଞାତ ହୁଅ ସକଳ ତୁରିତ
ତବ ଚକ୍ଷୁ ସବୁସ୍ଥଳେ ଅଛି ଉନ୍ମୀଳନ,
ହିଂସ୍ରଜନ୍ତୁ ଗ୍ରାସେ କି ଧ୍ରୁବ କବଳିତ
ହେଲେ ନପଡନ୍ତୁ ଅବା କହ ଗୋ ବହନ ।

୫

ହୋଇଲା ଆକାଶବାଣୀ ସୁନୀତକର୍ଣ୍ଣରେ
ସ୍ଥିର ହୁଅ ସ୍ଥିର ହୁଅ ଧ୍ରୁବର ଜନନୀ,
ତବ ପୁତ୍ର ନଗ୍ନପଦେ ଅଛି ଏ ବନରେ
ତାର କୀର୍ତ୍ତି ଚିରକାଳ ଘୋଷିବ ମେଦିନୀ,
ସେ ପୁତ୍ର ସାମାନ୍ୟ ନୁହେ ଅତି ତେଜେଶ୍ୱର
କି କରିବେ ବନଚର ହିଂସ୍ରଜନ୍ତୁଗଣ,
ପ୍ରତିଜ୍ଞାପାଶରେ ବଦ୍ଧ ତାହାର ଅନ୍ତର
ପାଇଲେ ଫେରିବ ଧ୍ରୁବ ସେହି ନିତ୍ୟଧନ ।

---

## ଶମନପ୍ରତି ।

ଅଶ୍ଚର୍ଯ୍ୟକ୍ଷମତା ତୋର ଅଛିରେ ଶମନ
ତୋର କ୍ଷମତାରେ ବାଧ ନହେ କେଉଁ ଜନ,
ଦେଖାଉଛୁ ଜୀବଗଣେ "ଅସ୍ଥିରତା" ଅନୁକ୍ଷଣେ
ଜଗତରେ କିଛି ରହୁନାହିଁ ବିଦ୍ୟମାନ
ପଦ୍ମପତ୍ରଜଳ କିମ୍ବା ବିଦ୍ୟୁତ ସମାନ । ୧ ।
ନାନାରୂପ ଖେଳ ତୋର ଅତିଚମତ୍କାର
ଦେଖି ମନେ ହୁଏ ମୋର ବିସ୍ମୟ ଅପାର
କେତେ ଲୋକ "ଆଶାତରୀ" ଡୁବାଇ ସମୂଳରୁ
କେତେ ଭାଙ୍ଗି ଚୂର କରୁ ଭସ୍ମ ମାତ୍ର ସାର

ନିଷ୍ଠୁରଭାବକୁ ଧରୁ ନ କରୁ ବିଚାର । ୨ ।
ତୋର ସହଚର ମୃତ୍ୟୁ ଚଉଷଠି ରୋଗ
ମାନବଶରୀର ସଦା କରୁଛନ୍ତି ଭୋଗ
ବଳ ବୀର୍ଯ୍ୟ ରକ୍ତ ମାଂସ    କ୍ରମେ କ୍ରମେ କରି ଗ୍ରାସ
ତୋ ହସ୍ତେ "ଜୀବନଦୀପ" କରନ୍ତି ପ୍ରୟୋଗ,
ପ୍ରବଳ ନିଶ୍ୱାସେ ତୋର ହୁଏ ସେ ବିୟୋଗ । ୩ ।
ଏ ଭୂମିମଣ୍ଡଳେ ଜାତ ହୋଇ ବୀରଗଣ
ନାନା ଖେଳ କଉତୁକ କଲେ ସଂଘଟନ
ସାଜି କେତେ ରଣସଜ୍ଜା    ଉଡ଼ାଇଲେ ଜୟଧ୍ୱଜା
ତୋ ସଙ୍ଗେ ଘଟିଲା ପୁଣି ଯେବେ ତାଙ୍କ ରଣ
ପରାଜିତ ହୋଇ କଲେ ଅନନ୍ତଶୟନ । ୪ ।
ସାହସଶିଖରୀଚୂଡ଼ା କରି ଆରୋହଣ
କରିବ ସ୍ୱଦେଶ ଦୁଃଖ ସମୂଳେ ଛେଦନ
ଏତେ ବଳ ଥିଲା ଯାର    ତୋର କ୍ଷମତାରେ ତାର
କି କ୍ଷମତା ଏକପଦ କରିବ କ୍ଷେପଣ
ସବୁ ପରିହରି କରେ ଭୂତଳେ ଶୟନ । ୫ ।
ସୁକୁମାର ସ୍ନେହାଧାର ଅପୂର୍ବସୁନ୍ଦର
ସୁଧାକରସମ ମୁଖ ସୁମଧୁର ସ୍ୱର
ଏରୂପ କୁମାର କୋଳେ    ଧରି ମାତା ସ୍ନେହଭୋଳେ
ଭବିଷ୍ୟତ ସୁଖରାଶି ଭାବନ୍ତି ମନର
ମରୀଚିକାସମ ସୁଖ କରୁ ତୁ ତାଙ୍କର । ୬ ।
ଅନୁପମା ମନୋରମା ସୁଶୀଳା କାମିନୀ
ପ୍ରତିବିମ୍ବସମ ସ୍ୱାମୀସଙ୍ଗବିହାରିଣୀ
କ୍ଷଣେ ସ୍ୱାମୀ ଅଦର୍ଶନ    ଯେ ମଣେ ବଜ୍ରପତନ

ସେ ପୁଣି ଧର୍‌ଶାପ୍ରିନୀ ଚରକରହରଣୀ ।
ତୋ ତୀକ୍ଷ୍ଣତୁଳିକା ଏକା ସେ ପ୍ରେମଘାତିନୀ । ୭ ।

---

## ପ୍ରଭାତ ।

ବିଗତା ରଜନୀ ହେଲା ପ୍ରଭାତ
ପୂର୍ବର ଆକାଶ ହୋଇଲା ପ୍ରକାଶ
ଧୀରେ ଧୀରେ ବହେ ଶୀତଳ ବାତ । ୧ ।
ପକ୍ଷୀଗଣ କଲେ ସଙ୍ଗୀତ ଗାନ
ବୃକ୍ଷ ଉପରେ ଶାଖାସଦନରେ
ବସି ଆନନ୍ଦରେ, ମୋହିତ ପ୍ରାଣ । ୨ ।
ସଞ୍ଚିତଶିଶିର ବୃକ୍ଷପତ୍ରରେ
ପଡେ ଧରତଳ ଦିଶେ ମୁକ୍ତାଫଳ
ସମାନ, ମାନବ ମାନସ ହରେ । ୩ ।
ପୂର୍ବଦିଗଦ୍ୱାର ଫେଡ଼ି ବନ୍ଧନ
ଲୋହିତବରଣ ଉଠିଲା ତପନ
ଛାଡ଼ିଲା ମେଦିନୀଖଣ୍ଡେ କିରଣ । ୪ ।
ଶିଖରୀଚୂଡ଼ାରେ ତପନକର
ପଡି କିବା ଶୋଭା ଅତି ମନୋଲୋଭା
ହେମମୟ ଦିଶୁଅଛି ଶିଖର । ୫ ।
ପାଇ ନିଜପତିତପନଭିତ ।
ସରସିଂହାସନେ ସହାସ୍ୟବଦନେ
ପଦ୍ମିନୀ ପ୍ରକାଶେ ନିର୍ମଳକାନ୍ତ । ୬ ।
ଭୟେ ନିଶାଚରବିହଙ୍ଗମାନେ
ପର୍ବତକନ୍ଦରେ ଅରଣ୍ୟପ୍ରାନ୍ତରେ
ରହିଲେ ବୃକ୍ଷର ନିବିଡ଼ସ୍ଥାନେ । ୭ ।

ଉନ୍ମତ୍ତ ହୋଇଣ ଭ୍ରମରଚୟ
ପୁଷ୍ପିତ ଉଦ୍ୟାନ ମଧ୍ୟେ ମଧୁପାନ
କଲେ ଗୁଞ୍ଜରବ ଆନନ୍ଦମୟ । ୮ ।
ଶଯ୍ୟା ତ୍ୟାଗ କରି ଧାର୍ମିକଗଣ
ପବିତ୍ର ଭାବରେ ଏକାନ୍ତ ମନରେ
କଲେ ଜଗପତିନାମ ଭଜନ । ୯ ।
ଗୋପାଳେ ଗୋଧନ ଘେନି ଚଳିଲେ
କୃଷିଜୀବୀଗଣ କ୍ଷେତ୍ରକର୍ଷଣ
ମାନସେ କ୍ଷେତ୍ରକୁ ଧୀରେ ଗମିଲେ । ୧୦ ।
ଯେ ଯାହାର କାର୍ଯ୍ୟେ ନିବିଷ୍ଟଚିତ୍ତ
ଅଲସୁଆନର ନିଜକଳେବର
କେବଳ ଶଯ୍ୟାରେ କଲେ ଭୂଷିତ । ୧୧ ।

---

## ନୀତି ।

ବଞ୍ଚକ ସଙ୍ଗେ ବନ୍ଧୁତା କରେ ଯେଉଁ ଜନ,
ନଷ୍ଟ ହୁଏ ଧନ ମାନ ନଷ୍ଟ ହୁଏ ତାର ପ୍ରାଣ
ବଞ୍ଚକ ଅଟଇ କାଳସର୍ପର ସମାନ । ୧ ।
କପଟତା ପରିହରି ସରଳତା ଧର,
ତେବେ ହେବ ମହାସୁଖ ଦୂର ହେବ ସବୁ ଦୁଃଖ
କପଟତା ଅଟେ ସବୁ ଦୋଷର ଆକର । ୨ ।
ଦୟାବତୀ ବସୁମତୀ କରେ ଯଥା ଦାନ,
ସେହି ପରି ଦାତାଜନ ଯଥାଶକ୍ତି ବିତରଣ
କରେ ଧନ ଦୀନଜନେ, ପାଏ ସ୍ୱର୍ଗସ୍ଥାନ । ୩ ।
ଅଗାଧ ଗମ୍ଭୀର ଅଟେ ଯଥା ରତ୍ନାକର,
ସାଧୁହୃଦପାରାବାର ସୁଗମ୍ଭୀର ସେ ପ୍ରକାର

ବିପରୀତ ଅଟେ ପୁଣି ଅସାଧୁ ଅନ୍ତର । ୪ ।
କର୍କଶସ୍ୱରରୁ ଯଥା କାକ ନିନ୍ଦନୀୟ,
କଠୋର ବଚନ ଯାର    ଲୋକେ ତଥା ନିନ୍ଦା ତାର
କୋମଳବଚନଭାଷୀ ଲୋକ ମାନନୀୟ । ୫ ।
ସର୍ବଦା ସନ୍ତୁଷ୍ଟ ଥାଏ ସାଧୁଜନମନ,
ଅସାଧୁ ଅସନ୍ତଚିତ୍ତ    ସଦା ଲୋଭେ ଆକର୍ଷିତ
ଦୁରାଶାବାରିଧି ତାର ନ ହୁଏ ପୂରଣ । ୬ ।
ପଦ୍ମହୀନସରୋବର ଯଥା ଅସୁନ୍ଦର,
ଦୟାହୀନ ଯେଉଁ ନର    ହୁଏ ତାର ଅନାଦର
ଅନ୍ୟ ଗୁଣେ ତତୋଽଧିକ ନୁହେ ଶୋଭାକର ।୭।
ବିଶୁଦ୍ଧ ସରଳମତି ଦୟାଳୁ ଯେ ଜନ,
ପର ଆପଣା ବିଚାର    ଗତ ଲୋଭ ଅହଂକାର
ଆତ୍ମବତ ସର୍ବଭୂତେ କରନ୍ତି ଦର୍ଶନ । ୮ ।
ଈଶ୍ୱରଙ୍କ ନିୟମ ଯେ କରଇ ଲଙ୍ଘନ,
ରୋଗେ ସଦା ଅମ୍ଳାନ    ଦୀନ ଦୁଃଖୀ ଧନୀ ମାନୀ
ସକଳେ ଲଭନ୍ତି ସମ ଭାବରେ ଶାସନ । ୯ ।
ସବଳ ଦୁର୍ବଳ ପ୍ରତି କରେ ଅତ୍ୟାଚାର,
କିନ୍ତୁ ଜଗତଈଶ୍ୱର    ଦେବେ ଦଣ୍ଡ ଗୁରୁତର
ନିରପେକ୍ଷଭାବେ ହେବ ସେଠାରେ ବିଚାର । ୧୦ ।
ବହୁ ଯତ୍ନେ ହୁଏ ସତ ଧନ ଉପାର୍ଜିତ,
ଧନଠାରୁ ବଡ଼ ମାନ    ମାନହୀନେ ମୃତସ୍ଥାନ—
କର ଧନ [illegible] ମାନ ରଖିବା ବିହିତ । ୧୧ ।
ପରଉପକାରେ ଧନ ଲାଗେ ସଜ୍ଜନର,
ସମୁଦ୍ରର ରତ୍ନମଣି    ପୃଥିବୀର ହୀରାଖଣି

ମନୁଷ୍ୟର କାର୍ଯ୍ୟ ଲାଗେ କି ହୁଏ ତାଙ୍କର ।୧୨।
ଅମୂଲ୍ୟ ସମୟ ବୃଥା ନ କର ହରଣ,
ନଦୀସ୍ରୋତ ଗିରନ୍ଦର      ପରି ଗତ ସମୟର
ଗତକାଲ ସଙ୍ଗେ ତବ ନ ହେବ ମିଳନ । ୧୩ ।
ପରନିନ୍ଦା ପରହିଂସା ପର ଅପକାର,
ନିତ୍ୟ ନିତ୍ୟ ସାଧେ ଖଳ      ହୋଇ ଅତି କୁତୂହଳ
ନିଜଦୋଷ ସଂଶୋଧନ ନ କରେ ବର୍ବର ।୧୪।
ସୂର୍ଯ୍ୟାଲୋକେ ଅନ୍ଧକାର ହୁଏ ଯଥା କ୍ଷୀଣ,
ତଥା ବିଦ୍ୟାର ଆଲୋକ      ନାଶ କରେ ଦୁଃଖ ଶୋକ
ଦୁଷ୍ଟ ବୃତ୍ତିଚୟ ସବୁ ହୁଅନ୍ତି ମଳିନ । ୧୫ ।
ଘନୋଦୟେ ପୂର୍ଣ୍ଣଚନ୍ଦ୍ରଶୋଭା ବିନାଶିତ,
ମନ୍ଦ ଲୋକ ଯଦି ଦୈବେ      ମିଳେ ସଜ୍ଜନର ପାଶେ
ସଜ୍ଜନସ୍ୱଭାବଆଭା କରେ କଳଙ୍କିତ । ୧୬ ।
ଦିବାରଜନୀର ଯଥା ହୁଏ ପରିବର୍ତ୍ତନ,
ସେହିପରି ଏ ପ୍ରକୃତ      ମାନବମାନସମ୍ପତ୍ତି
ସୁଖ ଦୁଃଖ ରୋଗ ଶୋକ ହୁଅନ୍ତି ଘଟନ । ୧୭ ।
ଅନ୍ଧ ନ ଦେଖେ ଯେପରି ପ୍ରକୃତ ଆକାର,
ଅଳସ ଶ୍ରମକାତର      ମୂର୍ଖ ନିରୁଦ୍ୟମୀନର
ନ ଦେଖଇ ଧନ ମାନ ଜ୍ଞାନ ପାରାବାର । ୧୮ ।
କ୍ଷୁଦ୍ର କ୍ଷୁଦ୍ର ତୃଣେ ଯଥା ରଜ୍ଜୁ ସଂଘଟନ,
ବହୁଜନ ଏକମନ      ହେଲେ ଐକ୍ୟତାସାଧନ
ସେହି ବଳେ ମିଳେ ସୁଖସ୍ୱାଧୀନତା ଧନ । ୧୯ ।
ନାନାସୁଖ ହୁଏ ବିଦ୍ୟା ଧନ ମାନ ପାଇ,
କିନ୍ତୁ ଯେ ପ୍ରକୃତ ସୁଖ      ସେ ସୁଖେ ସର୍ବେ ବିମୁଖ
ସେହି ସୁଖ "ଶାନ୍ତି ସୁଖ" ଧର୍ମେ ଅନ୍ୟେ ନାହିଁ ।୨

---